ବାଲ୍ମୀକି ନାୟକଙ୍କ -

# ହେତୁବାଦୀ ବିଚାର





ଏଥିରେ ପାଇବେ-

ଅଙ୍କ ଜ୍ୟୋତିଷ କେତେ ସତ

ଭଗବାନ ବନାମ ମାନବ

ପିତୃଶ୍ରାଦ୍ଧ କେତେ ଜରୁରୀ

| | |
|---|---|
| ହେତୁବାଦୀ ବିଚାର | Hetubadi Bichar |
| ଲେଖକ :- | Author :- |
| ବାଲ୍ମୀକି ନାୟକ | Balmiki Nayak |
| ପ୍ରକାଶିକା :- | Publisher :- |
| ମମତା ନାୟକ | Mamata Nayak |
| ପ୍ରଚ୍ଛଦ ଶିଳ୍ପୀ :- | Cover Design :- |
| ମୁକେଶ କୁମାର ସ୍ୱାଇଁ | Mukesh Kumar Swain |
| | Printer : Dots, Innovative Printers, Bengaluru. |
| ପ୍ରଥମ ପ୍ରକାଶନ:- | First Edition :- |
| ଜାନୁୟାରୀ,2019 | January,2019 |

| | |
|---|---|
| ମୂଲ୍ୟ: 90/- | Rs.90/- |

Mob :9482016260
E-mail:balmikinayak@gmail.com

# ଅନୁଭୂତିରୁ କିଛି

ମୋର ଗତ ଚାଳିଶି ବର୍ଷର ହେତୁବାଦୀ ଜୀବନ ଭିତରେ ଅନେକ ଖଟ୍ଟା ମିଠା ଅନୁଭବ ହୋଇଛି । ଅନେକ ଥର ଆର୍ଥିକ, ପାରିବାରିକ ଓ ସାମାଜିକ ସମସ୍ୟାର ସମ୍ମୁଖୀନ ହୋଇଛି । ସେହିସବୁ ସମୟରେ ଭୀଷଣ ମାନସିକ ଯନ୍ତ୍ରଣାରେ ଛଟପଟ ମଧ୍ୟ ହୋଇଛି କିନ୍ତୁ ମୁଁ ଦିନେ ବା ଥରେ ମଧ୍ୟ ତଥାକଥିତ ଭଗବାନଙ୍କୁ ସ୍ମରଣ କରିନାହିଁ । କାରଣ ପିଲା ଦିନରୁ ଯେଉଁ ଈଶ୍ୱର ବିଶ୍ୱାସ ଥିଲା ତାହା ମୋର ତର୍କଶୀଳ ବୁଦ୍ଧି ଓ ବୈଜ୍ଞାନିକ ଦୃଷ୍ଟିକୋଣ ଯୋଗୁ, 27/28 ବର୍ଷ ବୟସ ବେଳକୁ ଓହ୍ଲାଇ ଯାଇଥିଲା । ମୁଁ ଧର୍ମଶାସ୍ତ୍ର ଗୁଡିକରେ ଅନେକ ବିରୋଧାଭାସ ପାଇଲି । ମନରେ ପ୍ରଶ୍ନ ଉଠିଲା - "ଈଶ୍ୱର ତ ଏକ ପୁଣି 'ମତ' ସବୁ ଅଲଗା ଅଲଗା କାହିଁକି ?" ଉତ୍ତର ମିଳିଲା -"ନାନା ମୁନିଙ୍କ ନାନା ମତ ।" ମୁଁ ପୁଣି ଭାବିଲି - "ତା'ହେଲେ ସତ୍ୟ ନିଶ୍ଚୟ ଅନ୍ୟ କିଛି ଅଛି । ସତ୍ୟକୁ ନେଇ ତ ଅଲଗା ଅଲଗା ମତ ହେବ ନାହିଁ ।"

ତା'ପରଠାରୁ ଆଧ୍ୟାତ୍ମିକଜ୍ଞାନ ଅପେକ୍ଷା ବୈଜ୍ଞାନିକଜ୍ଞାନ ପ୍ରାପ୍ତ କରିବା ପାଇଁ ଅନେକ ବହି ପଢ଼ିଲି । ମନରେ ଜମାଟ ବାନ୍ଧି ରହିଥିବା ଅନେକ ଭିତ୍ତିହୀନ ବିଶ୍ୱାସ ଓ ଅହେତୁକ ଭୟ ଦୂର ହେବାକୁ ଲାଗିଲା । ଆପେ ଆପେ ମୁଁ ମାନସିକ ସ୍ତରରେ ବହୁତ ସହଜ ଅନୁଭବ କଲି । ମନରୁ ରୂଢ଼ିବାଦୀ ବିଚାର ସବୁ ଦୂରେଇ ଗଲା । ସବୁଠାରୁ ବଡ କଥା ହେଲା ମୋର ଆତ୍ମବିଶ୍ୱାସ ବୃଦ୍ଧି ହେଲା । ମୁଁ କାଳ୍ପନିକ ଈଶ୍ୱର ଉପରେ ବିଶ୍ୱାସ ହରାଇ, ନିଜ ଉପରେ ବିଶ୍ୱାସ କରିବା ଶିଖିଲି । ଅଧ୍ୟୟନ କରି ମୁକ୍ତ ମନରେ ବିଶ୍ଳେଷଣ କଲି । କଠିନ ପରିଶ୍ରମ କଲେ ସଫଳତା ପାଇବାର ଜ୍ଞାନ ପାଇଲି । ଜୀବନର ସମସ୍ୟାଗୁଡ଼ିକୁ କିପରି ସମାଧାନ କରିହେବ, ତା'ର ଉପାୟ ଚିନ୍ତାକରି, ଶୀଘ୍ର ନ ହେଲେ ବି ବିଳମ୍ବରେ ସମାଧାନ ପାଇଲି ।

ମୋର ହେତୁବାଦୀ ଅନୁଭବ ଓ ସଂଗୃହିତ ଜ୍ଞାନକୁ ସାହିତ୍ୟ ମାଧ୍ୟମରେ ପ୍ରକାଶ କରୁଛି । ଆଜି ପର୍ଯ୍ୟନ୍ତ ଅନେକ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇ ପାଠକୀୟ ସ୍ୱୀକୃତି ପ୍ରାପ୍ତ କରିଛି । ଆଶା କରୁଛି ଏହି ପ୍ରବନ୍ଧ ଗୁଡିକ ମଧ୍ୟ ପାଠକମାନଙ୍କ ମନକୁ ଛୁଇଁବ । ଜୟ ବିଜ୍ଞାନ ।

# ସୂଚୀ ପତ୍ର


| କ୍ରମାଙ୍କ ବିଷୟ | ପୃଷ୍ଠା |
|---|---|
| 1. କର୍ମ, ପୁନର୍ଜନ୍ମ ଓ ମୋକ୍ଷ (?) | 5 |
| 2. ଅଙ୍କ ଜ୍ୟୋତିଷ : କେତେ ସତ? | 13 |
| 3. ଈଶ୍ୱର କିଏ ଓ କେଉଁଠି? | 20 |
| 4. କରି କରାଉ ଥାଏ ! କିଏ? | 30 |
| 5. ତୀର୍ଥଙ୍କରମାନଙ୍କର ଅବୈଧ କାହାଣୀ | 36 |
| 6. ଭୂତ ବା ପ୍ରେତ କେଉଁଠି? | 41 |
| 7. ଅହେତୁକ ବିଶ୍ୱାସର ହେତୁ | 44 |
| 8. ନାସ୍ତିକର ପରିଭାଷା | 49 |
| 9. ଛୁଆଁ ଅଛୁଆଁ ଭେଦଭାବ କାହିଁକି? | 57 |
| 10. ଭାଗ୍ୟବାଦୀ ମାନସିକତା | 64 |
| 11. ଭଗବାନ ବନାମ ମାନବ | 69 |
| 12. ମାନିଲେ ଠାକୁର ନମାନିଲେ ପଥର (?) | 77 |
| 13. ପିତୃଶ୍ରାଦ୍ଧ କେତେ ଜରୁରୀ? | 81 |
| 14. ଶ୍ରେଷ୍ଠ କିଏ : ଏକ ବିତର୍କ | 88 |
| 15. ଭୟରୁ ଜାତ ଭିତିହୀନ ବିଶ୍ୱାସ | 94 |


*****<>*****

# କର୍ମ, ପୁନର୍ଜନ୍ମ ଓ ମୋକ୍ଷ (?)

ହିନ୍ଦୁ ଧର୍ମରେ କର୍ମ, ପୁନର୍ଜନ୍ମ ଓ ମୋକ୍ଷକୁ ନେଇ ଯେଉଁ କପୋଳକଳ୍ପିତ ଅବଧାରଣା ବ୍ୟକ୍ତି ମାନସରେ ଜମି ରହିଛି, ତାହା ମାନସିକ ତଥା ଆଧ୍ୟାତ୍ମିକ ଦୃଷ୍ଟିରୁ ବ୍ୟକ୍ତିକୁ ବୁଦ୍ଧିହୀନ ଓ ଭାଗ୍ୟବାଦୀ ବନେଇ ଦେଇଛି ।

ଆମର ସାମାଜିକ ଢାଞ୍ଚା ଜାତି ଭେଦକୁ ନେଇ ଗଠନ ହୋଇଛି । ବ୍ୟକ୍ତିର ମାନସିକତା ଓ ଆଧ୍ୟାତ୍ମିକ ଢାଞ୍ଚା ସେହି ଅନୁସାରେ ବିଭିନ୍ନ କର୍ମ, ପୁନର୍ଜନ୍ମ ଏବଂ ମୋକ୍ଷ ଆଧାରରେ ଗଠନ ହୋଇଛି । ଜାତିଭେଦ ଯୋଗୁ ହିନ୍ଦୁ ସମାଜ ବିଶୃଙ୍ଖଳିତ, ଜର୍ଜରିତ ଏବଂ ଦୁର୍ଗଣ ହୋଇଯାଇଛି ।

ହଜାର ହଜାର ବର୍ଷ ଧରି ତଥାକଥିତ ମୁନି ଋଷିମାନେ ଏହି ରହସ୍ୟର ମୂଳକୁ ପହଞ୍ଚିବା ପାଇଁ ଆପ୍ରାଣ ଚେଷ୍ଟା କରିଛନ୍ତି । ସେମାନେ ନିଜ ନିଜର ଅଭିଜ୍ଞତା ଓ ଅନୁମାନକୁ ଯେଉଁଭଳି ଭାବେ ପ୍ରତିପାଦନ କରିଛନ୍ତି ବା ଲେଖିଛନ୍ତି, ସେସବୁ ଏତେ ଅସ୍ପଷ୍ଟ ତଥା ଦ୍ୱନ୍ଦ୍ୱମୂଳକ ଭାବ ଓ ଭାଷାରେ ଅଛି ଯେ, ଏହାକୁ କୌଣସି ସ୍ୱସ୍ଥ ସାମାଜିକ ଜୀବନଯାପନ ପାଇଁ ଆବଶ୍ୟକ ଦର୍ଶନ ବା ଧାର୍ମିକ ବିଚାରତନ୍ତ୍ରର ଆଧାର ଭାବେ ଗ୍ରହଣ କରି ହେଉନାହିଁ । ଯଦି ବା ଏହାକୁ ଗ୍ରହଣ କରିନେବା ତେବେ ବି ସମାଜକୁ ଉଚିତ ମାର୍ଗଦର୍ଶନ ମିଳିବ ନାହିଁ ।

ଆମ ଦେଶରେ ଠିକ ଏଭୟା ହିଁ ହୋଇଛି । ଆର୍ଯ୍ୟମାନେ କର୍ମର ଆଧାର ଅନୁସାରେ ସମାଜକୁ ବିଭିନ୍ନ ବର୍ଗରେ ବାଣ୍ଟିବା ତଥା ସମସ୍ତଙ୍କୁ ଉଚ୍ଚନୀଚ ସ୍ତରରେ ରଖିବାର ଏକ ବିଶିଷ୍ଟ (ବିକୃତ) ବିଚାର ଦେଇଥିବାରୁ ସେତେବେଳେ ସେମାନଙ୍କୁ ବଡ଼ ବୁଦ୍ଧିମାନ ବୋଲି ସମସ୍ତେ ମାନୁଥିଲେ । ଏକବିଂଶ ଶତାବ୍ଦୀରେ ମଧ ବର୍ଣ୍ଣ ବ୍ୟବସ୍ଥାକୁ ସମର୍ଥନ କରୁଥିବା ଲୋକଙ୍କ ସଂଖ୍ୟା କମ ନୁହେଁ ।  କଠିନ ପରିଶ୍ରମ ଓ ସେବା କରିପାରୁଥିବା ବର୍ଗକୁ ଶୁଦ୍ର ଶ୍ରେଣୀରେ ରଖି ଆର୍ଯ୍ୟମାନେ ଆଦୌ ବୁଦ୍ଧିମତା କିମ୍ବା ସହୃଦୟତାର ପରିଚୟ ଦେଇ ନାହାନ୍ତି । ବିଶେଷ କରି ତଥାକଥିତ ଉଚ୍ଚ ଜାତିର ଲୋକମାନେ ହିଁ ଏହାର ସମର୍ଥନ କରିବେ । କାରଣ ସେମାନଙ୍କର ହୀନ ସ୍ୱାର୍ଥସାଧନ, ଶୁଦ୍ରମାନଙ୍କ ଦ୍ୱାରା ହିଁ ସମ୍ଭବ ହେଉଛି । ସେମାନେ ଭୁଲି ଯାଉଛନ୍ତି ଯେ,

ଦୁନିଆରେ ଆମଠାରୁ ବହୁତ ବଡ଼ ଓ ପୁରୁଣା ଦେଶ ସବୁ ବିନା ବର୍ଣ୍ଣ ବ୍ୟବସ୍ଥାରେ ମଧ୍ୟ ପ୍ରଗତିଶୀଳ ସମାଜ ଗଠନ କରିପାରିଛନ୍ତି । ସେହିସବୁ ଦେଶର ସମାଜ ଆମଠାରୁ ଉନ୍ନତ, ସଙ୍ଗଠିତ ଓ ସମୃଦ୍ଧ ହୋଇ ପାରିଛନ୍ତି ।

ସଂସାର ମାୟାଜାଲରୁ ମୁକ୍ତ ହେବାର ଉପାୟ (ଧର୍ମ ଗ୍ରନ୍ଥ ଅନୁସାରେ) କର୍ମ, ପୁନର୍ଜନ୍ମ ଓ ମୋକ୍ଷର ସିଦ୍ଧାନ୍ତ ଉପରେ ମଧ୍ୟ ଲାଗୁ ହୋଇଛି । ଏହି ତିନୋଟିର ପରସ୍ପର ସହିତ ଘନିଷ୍ଠ ସମ୍ପର୍କ ରହିଛି । ଏହି ଜନ୍ମରେ ଆମେ ଯେଉଁ ଅବସ୍ଥାରେ ଅଛୁ, ସେସବୁ ଗତ ଜନ୍ମର କୁକର୍ମ ବା ସୁକର୍ମର ଫଳ, ପୁଣି ଏଇ ଜନ୍ମରେ ଆମେ ଯେଉଁ କୁକର୍ମ ବା ସୁକର୍ମ କରିବା ସେସବୁ ଆସନ୍ତା ଜନ୍ମରେ ଆମକୁ ଭୋଗ କରିବାକୁ ପଡିବ ବୋଲି କୁହା ଯାଉଛି । କୁହାଯାଏ ଯେ ଆତ୍ମା ଅମର, ସେ ପ୍ରାଣୀ ଦ୍ୱାରା କୁକର୍ମ ବା ସୁକର୍ମ ଅନୁସାରେ ପ୍ରାଣୀର ଶରୀରକୁ ତ୍ୟାଗ ବା ଗ୍ରହଣ କରିଥାଏ । ମଣିଷର ଧର୍ମ ହେଉଛି - ଆତ୍ମାକୁ ଜନ୍ମ ମରଣର ଚକ୍ରରୁ ମୁକ୍ତ ରଖି ସିଧା ପରମାତ୍ମାଙ୍କ ଦର୍ଶନ କରାଇଦେବା । ପରମାତ୍ମାଙ୍କ ଦର୍ଶନ ରାସ୍ତାରେ କୁଆଡେ ସଂସାରର ବିଭିନ୍ନ ଆକର୍ଷଣ ବାଧା ସୃଷ୍ଟି କରିଥା'ନ୍ତି । ଏହାକୁ ମାୟାଜାଲ କୁହନ୍ତି । ଏହି ମାୟାଜାଲରୁ ମୁକ୍ତ ରହିବାପାଇଁ ଇନ୍ଦ୍ରିୟ ସଂଯମତା ଓ ଆତ୍ମଚିନ୍ତନ ଏକାନ୍ତ ଆବଶ୍ୟକ । ଏହା ଦ୍ୱାରା ମଣିଷର ମୋକ୍ଷ ପ୍ରାପ୍ତି ହେବାର ସମ୍ଭାବନା ଥାଏ । ମୋକ୍ଷ ପ୍ରାପ୍ତ କରିଥିବା ମଣିଷ ସଂସାରକୁ ଆଉ ଫେରି ଆସେ ନାହିଁ ସେ ବ୍ରହ୍ମ ରେ ବିଲୀନ ହୋଇଯାଏ ।

ଏଇଠି ପ୍ରଶ୍ନ ଉଠୁଛି - ଆତ୍ମା ଯଦି ମଣିଷକୁ ନିୟନ୍ତ୍ରଣ କରୁଛି ତେବେ ପୁଣି ମଣିଷର ଧର୍ମ କିପରି ଆତ୍ମାକୁ ଜନ୍ମ ଓ ମରଣର ଚକ୍ରରୁ ମୁକ୍ତ ରଖିବ ? ଆତ୍ମା ତ ଅମର ବୋଲି କହୁଛ ପୁଣି ତା'ର ଜନ୍ମ ମରଣ କଥା ଉଠୁଛି କାହିଁକି ?

ହିନ୍ଦୁ ଧର୍ମରେ ମୋକ୍ଷ-ପ୍ରାପ୍ତି ହିଁ ମଣିଷ ଜୀବନର ଚରମ ଓ ଏକାନ୍ତ ଲକ୍ଷ୍ୟ । କେତେକ ଧର୍ମ ଗୁରୁ କୁହନ୍ତି - ମୋକ୍ଷ ପ୍ରାପ୍ତି ପରେ ଜନ୍ମ - ମରଣର ଜଞ୍ଜାଳରୁ ମୁକ୍ତ ହୋଇ ଆତ୍ମା ପରମାତ୍ମାରେ ଲୀନ ହୋଇଯିବ, ତାକୁ ସଂସାରର ମାୟାଜାଲରେ ପଡି ଚୌରାଶିଲକ୍ଷ ଯୋନିରେ ଜନ୍ମନେଇ ଦୁଃଖ ଭୋଗରୁ ମୁକ୍ତି ମିଳିଯିବ । ଏହିଭଳି ମୋକ୍ଷପ୍ରାପ୍ତ ପାଇଁ ସଂସାରର କର୍ମ ଅପେକ୍ଷା ଧାର୍ମିକ କର୍ମ ଅର୍ଥାତ ଆତ୍ମ ଚିନ୍ତନ

ବେଶୀ କରିବାକୁ ହେବ । ସତ କଥା । ଯିଏ ସଂସାରରେ ରହିବ ନାହିଁ ସେ ସାଂସାରିକ କାମ କାହିଁକି କରିବ ? ଯିଏ ସଂସାରକୁ ଏକ ମାୟାଜାଲ ଭାବି ସେଥିରୁ ଦୂରେଇ ରହିବାକୁ ଜୀବନର ଆଦର୍ଶ ବୋଲି ଭାବୁଛି, ସେ କୌଣସି ଉତ୍ପାଦନ ମୂଳକ କାମ ଆଦୌ କରିବନି କିମ୍ବା ବହୁତ କମ କରିବ ।

ଏହି ବିଚାରଧାରା ହିନ୍ଦୁ ସମାଜରେ ଏତେ ଗଭୀର ଭାବେ ପ୍ରଭାବ ପକାଇଛି ଯେ, ଯିଏ ଯେତେ କମ ପରିମାଣରେ ହାତ ଗୋଡ଼ ହଲାଇବ (କାମ ଚୋର ହେବ) ସିଏ ସେତେବେଶୀ ସମାଜରେ ପୂଜନୀୟ ହେବ । ଯିଏ କଠିନ ପରିଶ୍ରମ କରି ଜୀବନର ମୌଳିକ ଉପାଦାନ ଖାଦ୍ୟ ଉତ୍ପାଦନ କରୁଛି କିମ୍ବା ସମାଜର ସେବା କରୁଛି ତା'ର ସମ୍ମାନ କମ ହୋଇଯାଉଛି ।

ସେମାନଙ୍କ ପାଇଁ ସ୍ୱର୍ଗର ପରିକଳ୍ପନା ହେଉଛି - "ସେଠାରେ ସବୁକିଛି ବ୍ୟବସ୍ଥିତ ଅଛି । ସ୍ୱର୍ଗର ରାଜା ଇନ୍ଦ୍ରଙ୍କ ପ୍ରଜା ହିସାବରେ ସବୁ ସୁଖ ଓ ଐଶ୍ୱର୍ଯ୍ୟ ଭୋଗ କରିବାକୁ ମିଳିବ ।" କେଉଁ ଭଳି ସୁଖ / କେଉଁ ଭଳି ଐଶ୍ୱର୍ଯ୍ୟ ? ସେମାନେ ଜାଣି ନାହାନ୍ତି । ତାଙ୍କର ଶରୀର ତ ଏଇଠି ରହିଯିବ, ଆତ୍ମା ତ ଅନ୍ୟ କେଉଁ ଶରୀରରେ ପଶି ଯିବ ତେଣୁ ସୁଖ ଭୋଗ କରିବ କିଏ ? ସେକଥା ବି ସେମାନେ ଜାଣିନାହାନ୍ତି । ତଥାପି ସଂସାରରେ ଉପଲବ୍ଧ ଖାଇବା, ପିଇବା, ଦାମ୍ପତ୍ୟ ଜୀବନରେ ପ୍ରେମ ଓ ଯୌନସୁଖ ପାଇବା ଇତ୍ୟାଦିକୁ ସେମାନେ ମାୟାଜାଲ ବୋଲି କହୁଛନ୍ତି କାହିଁକି ବୁଝା ପଡୁନି ?

କେତେ ଲୋକ ଯୁକ୍ତି କରନ୍ତି - ସଂସାରର ସୁଖ କ୍ଷଣିକ । ମାତ୍ର ଗୋଟିଏ ଜୀବନ ପାଇଁ ମିଳିଥାଏ କିନ୍ତୁ ସ୍ୱର୍ଗର ସୁଖ ଅନନ୍ତ କାଳ ପାଇଁ । ଏଠାରେ ସୁଖ ସହିତ ଦୁଃଖ ବି ମିଳିଥାଏ ସେଠାରେ କେବଳ ସୁଖ ହିଁ ସୁଖ ମିଳିବ । ତେଣୁ ଏଠିକାର କ୍ଷଣିକ ସୁଖ ପାଇଁ ଲୋଭ ନକରି ସାମାନ୍ୟ ଦୁଃଖ କଷ୍ଟ ସହି ଇନ୍ଦ୍ରିୟନିଗ୍ରହ ଓ ଆତ୍ମଚିନ୍ତନ କଲେ ସ୍ୱର୍ଗରେ ସ୍ଥାନ ମିଳିବ । ତାକୁ "ନୈଷ୍କର୍ମ୍ୟ ସିଦ୍ଧି" ବୋଲି କହନ୍ତି । ଏଭଳି ପରିସ୍ଥିତିରେ ସମାଜ ଉପେକ୍ଷିତ ରହିବା ସ୍ୱାଭାବିକ । ଯେଉଁମାନେ ମୋକ୍ଷର କଳ୍ପନା କରୁଥିଲେ ସେମାନେ ସମାଜ ଆଡକୁ ଧ୍ୟାନ ଦେଲେନାହିଁ । ଯେଉଁ ସମାଜରେ ରହି ଖାଇ ପିଇ ବଡ ହେଲେ ଏବଂ ମୋକ୍ଷ ପ୍ରାପ୍ତିର ଜ୍ଞାନ ପାଇବାପାଇଁ ଶିକ୍ଷା

ପାଇଲେ ସେହି ସମାଜ ତାଙ୍କ ପାଇଁ "ମାୟାଜାଲ" ପ୍ରତିତ ହେଲା । ଏହାଠାରୁ କୃତଘ୍ନ ପଣ ଆଉ କ'ଣ ଥାଇପାରେ ?

ଯଦି ସେମାନେ ସମାଜ ସହିତ ଜଡିତ ରୁହନ୍ତେ ଏବଂ ସମାଜ ବିଷୟରେ ଚିନ୍ତା କରନ୍ତେ, ତା'ହେଲେ ସେମାନଙ୍କୁ ସମାଜରେ ରହୁଥିବା ଅଭାବ ଗୁଡିକ ଦେଖାଦିଅନ୍ତା । ଉକ୍ତ ଅଭାବ ଗୁଡିକୁ ଦୂର କରିବାର ଉପାୟ ବି ସେମାନେ ଖୋଜି ବାହାର କରନ୍ତେ । ଅସଲ କଥା ହେଉଛି ଯେ ଏସବୁ କରିବାପାଇଁ ସେମାନଙ୍କୁ ଶାରୀରିକ ଓ ମାନସିକ ପରିଶ୍ରମ କରିବାକୁ ପଡନ୍ତା । ଶୂଦ୍ରଙ୍କ ଭାଗରେ ଯେଉଁ ସବୁ କର୍ମ ଦିଆସରିଛି, ସେ ସବୁକୁ ଏମାନେ ଫେରାଇ ଆଣିବେ କିପରି ? ତେଣୁ ସେମାନଙ୍କ ଉଚ୍ଚପଦ ଓ ଗାରିମା ବଜାୟ ରଖିବାକୁ କର୍ମ ଓ ପୁନର୍ଜନ୍ମ ସିଦ୍ଧାନ୍ତକୁ ଖୋଜିବାକୁ ପଡିଲା ।

ଏହି ସିଦ୍ଧାନ୍ତରୁ ସେମାନଙ୍କ ଗୋଟିଏ ବଡ଼ଲାଭ ହେଲା ଯେ, ଆର୍ଯ୍ୟମାନେ ଯେଉଁ ବର୍ଣ୍ଣବ୍ୟବସ୍ଥା ସମାଜକୁ ଦେଇଥିଲେ ତା'ର ଦାର୍ଶନିକ ସୂତ୍ରଟିଏ ମିଳିଗଲା । ବର୍ତମାନ ସେମାନେ କର୍ମ ଅନୁସାରେ ଥିବା ପ୍ରଥାକୁ ଜନ୍ମ ଅନୁସାରେ 'ଜାତି' ରୂପେ ପରିଣତ କରିପାରିଲେ । ସବୁବେଳ ପାଇଁ ନିଜର ଉଚ୍ଚଜାତିର ସମ୍ମାନକୁ ସୁରକ୍ଷିତ କରିପାରିଲେ । ଦ୍ଵିତୀୟରେ ଯଦି କୌଣସି ଶୂଦ୍ର ସାହାସ ସଞ୍ଚୟକରି ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କରୁଥିଲା, ତାକୁ ପୂର୍ବଜନ୍ମର କୃତକର୍ମର ଫଳ, ଏହି ଜନ୍ମରେ ଭୋଗ କରିବାପାଇଁ ଉପଦେଶ ଶୁଣାଇ ମାନସିକ ଭାବେ ପଙ୍ଗୁ କରି ଦିଆଗଲା ।

ତା' ଛଡା ନିଜ ଜାତିର ମର୍ଯ୍ୟାଦା ଲଙ୍ଘନ କରିବାଟା ଧର୍ମବିରୋଧୀ ବୋଲି ଘୋଷଣା କରି ଦିଆଗଲା । ନିଜ ଜାତିରେ ରହି ଦୁଃଖ, ନିର୍ଯ୍ୟାତନା ଭୋଗ କରିବାକୁ ପଡିଲେ ମଧ ତାହା ହିଁ 'ସ୍ୱଧର୍ମ' ବୋଲି ମାନିବାକୁ ଆଶ୍ୱାସନା ଦିଆଗଲା । "ସ୍ୱଧର୍ମେ ନିଧନଂ ଶ୍ରେୟ, ପର ଧର୍ମ ଭୟାବହ" ସିଦ୍ଧାନ୍ତ ଅନୁସାରେ ଯିଏ ଯେଉଁଠି, ଯେଉଁଭଳି ସେ ସେଇଠି ସେହିଭଳି ରହି ସ୍ୱଧର୍ମ ପାଳନ କରୁଥାଉ । ଶୂଦ୍ରକୁ ଘୃଣା କରିବା 'ବ୍ରାହ୍ମଣଙ୍କ ସ୍ୱଧର୍ମ' ବୋଲି ମାନି ନିଆଗଲା । ବ୍ରାହ୍ମଣକୁ ପୂଜା କରିବା ଶୂଦ୍ରଙ୍କ 'ସ୍ୱଧର୍ମ' ହେଲା । ହଜାର ହଜାର ବର୍ଷ ଧରି ଏହି ନିୟମ ଚଳି ଆସିଥିବାରୁ ବିଚାରା ଶୂଦ୍ରବର୍ଗ ନିଜର ଆତ୍ମସମ୍ମାନ ହରାଇ ଏତେ ଦୀନହୀନ ହୋଇପଡିଛନ୍ତି ଯେ ଏବେ

ଯଦିଓ ସେମାନେ ଅନେକ ସାମ୍ବିଧାନିକ ଅଧିକାର ପ୍ରାପ୍ତ ହେଲେଣି ତଥାପି ସେମାନେ ଆଗକୁ ଆସିବାକୁ ସାହାସ କରି ପାରୁନାହାନ୍ତି । ଏହି ବ୍ୟବସ୍ଥାରେ ହଜାର ହଜାର ବର୍ଷ ରହି ଆସିଥିବାରୁ ସମସ୍ତଙ୍କର ମାନସିକ ଶୋଷଣ (ବ୍ରେନ ୱାସ) ହୋଇସାରିଛି । ସେଥିପାଇଁ ସମସ୍ତେ ନିଜକୁ ଉଚ୍ଚ ବା ନୀଚ ଜାତିର ବ୍ୟକ୍ତି ବୋଲି ମାନସିକ ସନ୍ତୁଷ୍ଟି ନେଇ ବଞ୍ଚିଛନ୍ତି ।

ଏହି ସବୁ ବ୍ୟବସ୍ଥା ହିନ୍ଦୁମାନଙ୍କୁ ସମାଜ ପ୍ରତି ବିମୁଖ କରାଇବା ସହ ସେମାନଙ୍କୁ ଭାଗ୍ୟବାଦୀ କରି ଦେଇଛି । ସମାଜ ଯେଉଁ ଅବସ୍ଥାରେ ଅଛି ତାହା ପୂର୍ବ ନିର୍ଦ୍ଧାରିତ ବୋଲି ମାନିନେଇଛି । ଏହାକୁ ପରିବର୍ତ୍ତନ କରିବା ଆମ କ୍ଷମତାରେ ନାହିଁ ବୋଲି ସେମାନେ ଭାବୁଛନ୍ତି । ଯୁଗ ସହିତ ତାଳ ଦେଇ ନ ବଦଳୁଥିବା ସମାଜରେ ଅନେକ ପ୍ରକାର ଅଭାବ ଏବଂ ଅଭିଯୋଗ ରହିବା ସ୍ୱାଭାବିକ । ପରିଶ୍ରମକୁ ଉଚିତ ମୂଲ୍ୟ ବା ପୁରସ୍କାର ନ ମିଳିବାରୁ ସମାଜର ଗୋଟିଏ ବର୍ଗ ଭିତରେ ସର୍ବଦା ଦାରିଦ୍ର୍ୟ ଲାଗି ରହିଲା । ମଣିଷ ସମୁଦାୟ ଭିତରେ ସମାନତା ନ ରହିବାରୁ ଭେଦଭାବ ଓ ମନାନ୍ତର ବଢି ଚାଲିଲା । ନିଜ ଦ୍ୱାରା ବିଗିଡି ଯାଇଥିବା ସମାଜ ବ୍ୟବସ୍ଥାକୁ ଆମେ ପୂର୍ବଜନ୍ମର କୁକର୍ମ ବା ସୁକର୍ମର ଫଳ ମାନିନେଇ, ବ୍ୟବସ୍ଥାକୁ ସୁଧାରିବାକୁ ଚେଷ୍ଟା କରୁନାହୁଁ ।

ସେଥିପାଇଁ ମୋକ୍ଷପ୍ରାପ୍ତି ଛଡା ସେମାନଙ୍କୁ କଷ୍ଟରୁ ମୁକ୍ତି ଦେବା ପାଇଁ ଅନ୍ୟ କୌଣସି ଉପାୟ ନଥିଲା । ମୋକ୍ଷପ୍ରାପ୍ତିର ଲାଳସା ଗୋଟିଏ ପଳାୟନପନ୍ଥୀ ମାନସିକତା । ଜୀବନରସବୁ ସମସ୍ୟାରୁ ମୁକ୍ତି ପାଇବାର ଏକ ଆତ୍ମପ୍ରବଞ୍ଚନା ମାତ୍ର । ଏଇଠି ମଧ୍ୟ ଆମେ ହୀନସ୍ୱାର୍ଥର ପରିଚୟ ଦେବାକୁ ଭୁଲିନାହୁଁ । ଶୂଦ୍ରମାନଙ୍କୁ ମୋକ୍ଷର ଅଧିକାରରୁ ବଞ୍ଚିତ କରି ଦେଇଛୁ, କାରଣ ଶୂଦ୍ରମାନେ ଯଦି ମୋକ୍ଷପ୍ରାପ୍ତି ପାଇଁ ସମାଜରୁ ବିମୁଖ ହୋଇଯା'ନ୍ତେ ଏବଂ ସବୁ କାମଦାମ ଛାଡି ଦିଅନ୍ତେ, ତା'ହେଲେ ଉଚ୍ଚଜାତିର ଲୋକମାନଙ୍କୁ ଖାଇବା ପିନ୍ଧିବାକୁ ଦିଅନ୍ତା କିଏ ? ସେମାନଙ୍କର ସେବା କରନ୍ତା କିଏ ? ସେଥିପାଇଁ ଶୂଦ୍ରମାନଙ୍କୁ ଧର୍ମ ଓ ଦର୍ଶନ ଗ୍ରନ୍ଥ ପଢିବା, ଶୁଣିବା ମନା, ଭୁଲରେ ମଧ୍ୟ ବିଦ୍ରୋହଭାବନା ମନରେ ଆଣିବା ମନା ଅର୍ଥାତ ସ୍ୱଧର୍ମରୁ (ଉଚ୍ଚ ଜାତିର ସେବା) ବିଚ୍ୟୁତ ହେବା ମନା । ଶୂଦ୍ରବର୍ଗ କେବେ ବି

ନିଜସ୍ୱ ବୁଦ୍ଧିର ପ୍ରୟୋଗ କଲେନାହିଁ, ଉଚ୍ଚବର୍ଗର ଲୋକଙ୍କ ସ୍ୱାର୍ଥପର ମନୋବୃତ୍ତିକୁ ଚିହ୍ନି ପାରିଲେନାହିଁ । ଯେଉଁଥିପାଇଁ ସେମାନେ ଯୁଗ ଯୁଗ ଧରି ହୀନିମାନିଆ ଜୀବନ ନେଇ ବଞ୍ଚି ରହିଛନ୍ତି ।

ଏଭଳି ପରିସ୍ଥିତିରେ ସମାଜକୁ ଦେଖିବାପାଇଁ କେହି ରହିଲେ ନାହିଁ । ଯେଉଁମାନେ ମୋକ୍ଷ ପଛରେ ଗୋଡ଼ାଇଲେ, ସେମାନେ ସମାଜକୁ ଉପେକ୍ଷା କରିବାକୁ ଲାଗିଲେ । ଯେଉଁ ଶୂଦ୍ରବର୍ଗ ସମାଜର ଅଭାବ ଓ ଅଭିଯୋଗକୁ ନେଇ ସଙ୍ଘର୍ଷ କଲେ, ସେମାନଙ୍କୁ ଏତେ ଦୁର୍ବଳ ଓ ଅଧିକାରହୀନ କରି ଦିଆଗଲା ଯେ, ସମାଜ ଆପେ ଆପେ ଦୁର୍ବଳ ହୋଇପଡିଲା । ହିନ୍ଦୁ ସମାଜ ଏକ ସୁସ୍ଥ ଓ ଶକ୍ତିଶାଳୀ ସମାଜ ରୂପେ ପରିଗଣିତ ହୋଇ ପାରିଲାନାହିଁ । ତେଣୁ ବାହାରୁ ଯେତେ ଥର ଆକ୍ରମଣ ହେଲା ଆମେ କିଛି କରିପାରିଲୁ ନାହିଁ । ବ୍ରାହ୍ମଣମାନେ ବ୍ରହ୍ମଜ୍ଞାନ ସହିତ ଯୁଦ୍ଧବିଦ୍ୟାରେ ବି ନିପୁଣ ଥିଲେ, କାରଣ ତାଙ୍କର ତପସ୍ୟାର ପ୍ରଚଣ୍ଡ ଶକ୍ତି ଆଗରେ ମହାପ୍ରତାପୀ ଇନ୍ଦ୍ରଦେବତାଙ୍କ ଆସନ କୁଆଡେ ଟଳମଳ ହୋଇ ଯାଉଥିଲା ଏବଂ ସେମାନଙ୍କ ଅଭିଶାପ ଫଳରେ କେତେ କ'ଣ ଅଘଟଣ ଘଟି ଯାଉଥିଲା । ତେବେ ନିଜର ଦେବତାଙ୍କ ମୂର୍ତ୍ତି ଓ ମନ୍ଦିର ଧ୍ୱଂସ ହେଉଥିବାବେଳେ ସେମାନେ କେବଳ ମୂକ ଦର୍ଶକ ହୋଇ ଚାହିଁ ରହିଥିଲେ କାହିଁକି ? ଅଜାମିଳ ଭଳି ପାପିକୁ ଉଦ୍ଧାର କରିଦେଇଥିବା ଭଗବାନ ତାଙ୍କର ଭକ୍ତଙ୍କୁ ରକ୍ଷା କରିବା ଦୂରେ ଥାଉ ସେ ନିଜକୁ ମଧ ରକ୍ଷା କରି ପାରିଲେନାହିଁ । ମୁଷ୍ଟିମେୟ ବିଦେଶୀ ଶତ୍ରୁଙ୍କ ଆଗରେ ଆମର ହଜାର ହଜାର ସୈନ୍ୟ ଥାଇ ମଧ ମହାନ ଧର୍ମସ୍ଥଳ କିମ୍ବା ଭଗବାନଙ୍କୁ ରକ୍ଷା କରି ପାରିଲୁନାହିଁ । ଏହି ଅବସ୍ଥା କ୍ଷତ୍ରିୟମାନଙ୍କର ବି ଥିଲା । ଅଧିକାର ଓ ଭୋଗ ଲାଳସାରେ ସେମାନେ ବି ସବୁ ସିଦ୍ଧାନ୍ତ, ସବୁ ଆଦର୍ଶକୁ ଦଳି ପକାଇଦେଲେ ଏବଂ ଅବସରବାଦୀ ପାଲଟିଗଲେ । ସେମାନଙ୍କ ପାଇଁ ଦେଶ ଓ ଧର୍ମର କୌଣସି ମହତ୍ତ୍ୱ ରହିଲାନାହିଁ । ପରିଣାମତଃ  ଆମେ ଅନେକ ବର୍ଷ ଧରି ଅନ୍ୟମାନଙ୍କ ପାଖରେ ଗୋଲାମ ହୋଇ ରହିଲୁ ।

ଏହି ଗୋଲାମୀ ଦୁଃଖକୁ ଭୁଲିବା ପାଇଁ ଆମେ ପୁଣି ଏକ ଚିର ପରିଚିତ ଆତ୍ମପ୍ରବଞ୍ଚନାର ସାହାରା ନେଲୁ । ବର୍ଣ୍ଣ ବ୍ୟବସ୍ଥାର ବଡ଼ ବଡ଼ ସୀମାରେଖାରୁ

ବାହାରି ଜାତିଗତ ଛୋଟ ଛୋଟ ସୀମା ଭିତରେ ମୁଣ୍ଡ ପୂରାଇବାକୁ ଲାଗିଲୁ । ଯାହାଫଳରେ ଶହ ଶହ ଜାତି ଓ ଉପଜାତି ସୃଷ୍ଟି ହୋଇଗଲା । ତା'ଫଳରେ ଆମର ଦୁଃଖ ଆହୁରି ଅଧିକ ବଢ଼ିବାକୁ ଲାଗିଲା । ଏଇ ଦୁଃଖରୁ ମୁକ୍ତି ପାଇବା ପାଇଁ ମୋକ୍ଷପ୍ରାପ୍ତି ଆହୁରି ଅଧିକ ଆବଶ୍ୟକ ମନେହେଲା । ଆମେ ତଥାକଥିତ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲୁ । ଆତ୍ମଶୁଦ୍ଧି କିପରିହେବ ? ଆମେ ସେଇ ଚିନ୍ତାରେ ବୁଡି ରହିଲୁ । ତେଣେ ଆମର ଚତୁଃପାର୍ଶ୍ୱରେ ଯାବତୀୟ ଅଳିଆ ଆବର୍ଜନା ଜମା ହେବାକୁ ଲାଗିଲା । ବାହାରର ଆବର୍ଜନା ବଢ଼ିବା ସଙ୍ଗେ ସଙ୍ଗେ ଆମ ସମାଜ ଆମକୁ ଆହୁରି ବେଶୀ କଷ୍ଟଦାୟକ ମନେହେଲା । ଫଳରେ ଆମେ ସେହି ସମାଜରୁ ଅଧିକ ଦୂରେଇ ରହିବାକୁ ଉଚିତ ମନେକଲୁ । ଆମକୁ ବୁଝାପଡିଲାନି ଯେ ଆମର ଜୀବନରେ ଯେଉଁ ଅଭାବ ବା କଷ୍ଟ ସବୁ ଉତ୍ପନ୍ନ ହୋଇଛି, ତା' ଏଇ ସମାଜର ଅବ୍ୟବସ୍ଥା କାରଣରୁ ହୋଇଛି । ତେଣୁ ଏହି ସମାଜକୁ ସମୂଳେ ବଦଳାଇବା ହିଁ ଏକମାତ୍ର ଉପାୟ, ତାହା ବୁଝି ପାରିଲୁନି ।

ଆମର ଏହି ଅସାମାଜିକତା ହିଁ ଆମର ବୁଦ୍ଧି ଭ୍ରଷ୍ଟ କରିଦେଲା । ଗୁଡିଏ ଅସ୍ପଷ୍ଟ ସିଦ୍ଧାନ୍ତ ଲାଗୁ ହୋଇଥିବାରୁ ହିନ୍ଦୁମାନଙ୍କ ଜୀବନ ଏକ ବିରୋଧାଭାସ ହୋଇ ରହିଯାଇଛି । ଯେଉଁମାନେ ଚୌରାଶିଲକ୍ଷ ଯୋନିରୁ ସର୍ବଶ୍ରେଷ୍ଠ ଯୋନି "ମାନବ ଯୋନି" ବୋଲି ମାନୁଛନ୍ତି ସେମାନେ ସମାଜକୁ ହିଁ ମାୟାଜାଲ ବୋଲି ମନେକରୁଛନ୍ତି । ହିନ୍ଦୁଧର୍ମର ମହାନ ପ୍ରବକ୍ତା "ବ୍ରହ୍ମ ସତ୍ୟ ଜଗତ ମିଥ୍ୟା" କହି ହିନ୍ଦୁମାନଙ୍କୁ ଏଭଳି ଦ୍ୱନ୍ଦ୍ୱରେ ପକାଇଦେଇଛନ୍ତି ଯେ ସେମାନେ ଭଲକରି ଜିଇଁ ପାରୁନାହାନ୍ତି କି ମରି ପାରୁନାହାନ୍ତି । ଚୌରାଶିଲକ୍ଷ ଯୋନିରେ ଜନ୍ମ ନେଇ ବଞ୍ଚିବାର ଭୟ କିଛି କମ ନୁହେଁ । ତେଣୁ ମଣିଷ ଜନ୍ମ ନେଇ ଯିଏ ସୁଖ ଓ ଦୁଃଖ ଭୋଗ କରି ସାରିଛି, ସେ ବି ଅନୁତାପ କରୁଛି, ମୁଁ ଏଇ ଅମୂଲ୍ୟ ଜୀବନକୁ ମିଥ୍ୟା ଜଗତରେ ରହି ଅଯଥା ନଷ୍ଟ କରିଦେଲି । ଆଉ ଯିଏ ଭୋଗ ବିଳାସ ତ୍ୟାଗ ପୂର୍ବକ ତପସ୍ୟା କରି ଜୀବନ କାଟିଛି, ସେ ବି ଅନୁତାପ କରୁଛି, ସ୍ୱର୍ଗସୁଖ ବା ମୋକ୍ଷପ୍ରାପ୍ତି କେବେହେବ ଜଣାନାହିଁ ହେଲେ, ଏକ ଅମୂଲ୍ୟ ଜୀବନଟା ଅଯଥା ହାହାକାର ଓ ଦୁଃଖରେ ବିତିଗଲା । ଶେଷରେ

ଏଭଳି ଦୁଇ ଗୋଷ୍ଠୀଙ୍କ ଦ୍ୱାରା ସମାଜର ବା ଧର୍ମର କୌଣସି ହିତକାରୀ କାମ ହୋଇପାରିଲା ନାହିଁ ।

ବର୍ତ୍ତମାନ ସମୟ ଆସିଛି ହିନ୍ଦୁସମାଜକୁ ଏଇ ପୁନର୍ଜନ୍ମ ଓ ମୋକ୍ଷର ଚକ୍ରବ୍ୟୂହରୁ ମୁକ୍ତକରି ଏହାକୁ ନୂତନ ଦିଗରେ ପରିଚାଳିତ କରିବା ସହିତ ବୈଜ୍ଞାନିକ ଚିନ୍ତାଧାରା ପ୍ରଦାନ କରିବା । ହଜାର ହଜାର ବର୍ଷ ଧରି ଧର୍ମର ପ୍ରଯୋଗ କରି ଆମେ ସବୁ ଦେଖି ସାରିଲେଣି । ପ୍ରୟୋଗର ପରିଣତି କାହାରିକୁ ଅଜଣା ନାହିଁ ।

ଯଦି ଏବେ ବି ଆମେ ଇତିହାସରୁ କିଛି ଶିକ୍ଷା ନେଇପାରିବା, ତା' ହେଲେ ସମାଜ ଉଦ୍ଧାର ପାଇଯିବ । ହିନ୍ଦୁ ସମାଜରେ ଯେଉଁ ସବୁ ଅଭାବ ରହିଛି, ସେଗୁଡିକୁ କିପରି ଦୂର କରାଯାଇପାରିବ, ୟା' ଉପରେ ବୌଦ୍ଧିକ ଦୃଷ୍ଟିକୋଣରୁ ବିଚାର କରି କାର୍ଯ୍ୟ କରିବାକୁ ପଡିବ । ସମାଜ ପାଇଁ ସମସ୍ତେ ଚିନ୍ତା କରନ୍ତୁ । ସମାଜକୁ ନିଜ ସାଙ୍ଗରେ ନିଅନ୍ତୁ । ସମାଜକୁ ଶୃଙ୍ଖଳିତ କରି ସଜାଇ ଦିଅନ୍ତୁ । ତା'ପରେ ଦେଖିବେ ସେଇ ସୁସ୍ଥ, ସୁନ୍ଦର ସମାଜରେ ରହିବାରେ କିପରି ଅପାର ଆନନ୍ଦ ପ୍ରାପ୍ତ ହେବ ? ମୋକ୍ଷପ୍ରାପ୍ତିର କଳ୍ପିତ ଆନନ୍ଦ ଆକାଶକୁସୁମ ମାତ୍ର, ତେଣୁ ତାହା ବର୍ଜନୀୟ ।

*****<>*****

# ଅଙ୍କ ଜ୍ୟୋତିଷ :କେତେ ସତ ?

ମଣିଷ ଜୀବନରେ ସର୍ବଦା ଅନିଶ୍ଚିତତା ଲାଗି ରହିଛି । କେତେବେଳେ, କାହା ଜୀବନରେ କ'ଣ ଘଟିବ, କେହି ଜାଣନ୍ତି ନାହିଁ । ସେଥିପାଇଁ ଭବିଷ୍ୟତରେ କ'ଣ ଘଟିବ, ତାହା ଆଗରୁ ଜାଣିପାରିବାର ଉତ୍କଣ୍ଠା ମଣିଷର ଏକ ସହଜାତ ପ୍ରବୃତ୍ତି । ଭବିଷ୍ୟତ ପାଇଁ ଚିନ୍ତା କରିବା ଏବଂ ପରିଣାମ ଗୁଡିକର ସମ୍ଭାବନା ଗୁଡିକ ଉପରେ ତର୍ଜମା କରି କର୍ମ ନିର୍ଦ୍ଧାରଣ କରିବା ଜ୍ଞାନକୁ ଅଦୂରଦର୍ଶିତା ବୋଲି ଆମେ ମାନିବା ଉଚିତ ନୁହେଁ କିନ୍ତୁ କୌଣସି ଜ୍ୟୋତିଷ ପାଖକୁ ଯାଇ ଅବୈଜ୍ଞାନିକ ପଦ୍ଧତିରେ ଗ୍ରହ, ନକ୍ଷତ୍ରର ପ୍ରଭାବ ସମ୍ପର୍କରେ ଗଣନା କରି ଭବିଷ୍ୟତର କାର୍ଯ୍ୟପନ୍ଥା ସ୍ଥିର କରିବା ଆଦୌ ତର୍କସଙ୍ଗତ ନୁହେଁ । ଭବିଷ୍ୟତରେ କ'ଣ ହେବ, ଏହା ଜାଣିବାପାଇଁ ବ୍ୟସ୍ତ ମନରେ ଇତସ୍ତତଃ ହୋଇ ଦୌଡୁଥିବା ମଣିଷର ଦୁର୍ବଳତା ଦେଖି ଫାଇଦା ଉଠାଉଥିବା କିଛି ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ଆମ ସମାଜରେ ଭରି ରହିଛନ୍ତି ।

ଅନେକ ବ୍ୟକ୍ତି ବାସ୍ତବିକତା ଉପରେ ବିଚାର ନକରି ରାସ୍ତା କଡରେ ବସିଥିବା ତଥାକଥିତ ଜ୍ୟୋତିଷ କିମ୍ବା ମହଙ୍ଗା ହୋଟେଲରେ ରହି ନିଜକୁ ମହାଜ୍ଞାନୀ ଜ୍ୟୋତିର୍ବିଦ ବୋଲି ପ୍ରଚାର କରୁଥିବା ବ୍ୟକ୍ତିଙ୍କ ପାଖକୁ ଯାଇ ନିଜର କଷ୍ଟ ଉପାର୍ଜିତ ଧନ ଦେଇ ସେମାନଙ୍କ ଠାରୁ କେବଳ ମିଥ୍ୟା ଆଶ୍ୱାସନା ନେଇ ଫେରିଥାନ୍ତି । ଅନେକ ଲୋକ ପ୍ରତିଦିନ ଖବର କାଗଜ ପଢ଼ନ୍ତି କେବଳ ରାଶିଫଳ ଜାଣିବାପାଇଁ । ଟିଭିରେ ସକାଳୁ ସକାଳୁ କୌଣସି ଜ୍ୟୋତିଷଙ୍କ ରାଶିଫଳ ଶୁଣିବାକୁ ଚାହିଁ ବସନ୍ତି । ସମଗ୍ର ମାନବ ଜାତିକୁ ମାତ୍ର ବାରଗୋଟି ରାଶିରେ ବାଣ୍ଟିଦେଇ ଯେଉଁ ରାଶିଫଳ ପଢ଼ନ୍ତି ବା ଶୁଣନ୍ତି ଅଧିକାଂଶ ଭୟାଳୁ ମଣିଷ ସେଇୟାକୁ ବିଶ୍ୱାସ ମଧ କରନ୍ତି । ସେମାନେ କେବେ ନିଜର ବୁଦ୍ଧି ପ୍ରୟୋଗ କରି ପ୍ରଶ୍ନ କରନ୍ତି ନାହିଁ ଯେ "ଆଜି ମୋର ଯାହା ଘଟିବ, ମୋର ରାଶି ଥିବା ଅନ୍ୟ ସବୁ ଲୋକମାନଙ୍କର ମଧ କ'ଣ ତାହା ହିଁ ଘଟିବ ?" କାକତାଳୀୟ ନ୍ୟାୟରେ ଯଦି ସେଦିନ ରାଶିଫଳ ଅନୁସାରେ କିଛି ସତ ହୋଇଗଲା ତା'ହେଲେ ତାଙ୍କର ଜ୍ୟୋତିଷ ବିଦ୍ୟା ଉପରେ ଆହୁରି ବେଶୀ ବିଶ୍ୱାସ

 

ବଢିଯାଏ । ଅନ୍ୟଦିନ ମାନଙ୍କରେ ମଧ୍ୟ ରାଶିଫଳ ଅନୁସାରେ ତାଙ୍କୁ କାହିଁକି ଫଳ ମିଳିଲାନି ? ସେମାନେ ଚିନ୍ତାକରିବାକୁ ଚାହାନ୍ତି ନାହିଁ ।

ଆଜିପର୍ଯ୍ୟନ୍ତ ଏମିତି କୌଣସି ବିଦ୍ୟା ବା ବିଜ୍ଞାନର ସନ୍ଧାନ ମିଳିନାହିଁ, ଯାହାଦ୍ୱାରା ମଣିଷର ଆସନ୍ତା ମୁହୂର୍ତ୍ତର ଅବସ୍ଥା କ'ଣ ହେବ, ତାହା ଠିକ ଭାବେ ଜାଣିହେବ ? ଯଦି ଏହା ସମ୍ଭବ ହୋଇ ପାରିଥାନ୍ତା, ଦୁନିଆର ଇତିହାସ ସ୍ୱରୂପ ଅନ୍ୟ କିଛି ହୋଇଥାନ୍ତା । ସେତେବେଳେ ଯଦି 'ହିଟଲର' ଜାଣି ପାରିଥାନ୍ତା ଯେ, ଯୁଦ୍ଧ ଶେଷରେ ଜର୍ମାନୀ ହାରିଯିବ ତେବେ ସେ ପୋଲାଣ୍ଡ ଉପରେ ଆକ୍ରମଣ କରିବାର ଆତ୍ମଘାତୀ ପଦକ୍ଷେପ ନେଇ ନଥାନ୍ତା ।

ଭବିଷ୍ୟତକୁ ଜାଣିବା ଅସମ୍ଭବ । ଏକଥା ନିଃସନ୍ଦେହରେ କୁହାଯାଇପାରିବ, କାରଣ କୌଣସି କର୍ମ ବିଧି ନିର୍ଦ୍ଧାରିତ ନୁହେଁ । ମଣିଷ ହିଁ ନିଜର ବୁଦ୍ଧି ଅନୁସାରେ କର୍ମ ନିର୍ଦ୍ଧାରଣ କରିଥାଏ, ଯାହାର ସଫଳତା ଉପରେ ସନ୍ଦେହର ପ୍ରଶ୍ନ ଚିହ୍ନ ମଧ୍ୟ ଥାଏ । ବିଧି ନିର୍ଦ୍ଧାରିତ ଅର୍ଥ ନିଶ୍ଚିତ, ସେଥିରେ ସନ୍ଦେହ ନଥାଏ । ଯଦି କେହି ବିଧି ନିର୍ଦ୍ଧାରିତ କର୍ମଫଳଟି ବିଫଳ ହେବା କଥା ଆଗରୁ କହିଦେବ ତେବେ ସେହି କାମ କିଏ କରିବାକୁ ଯିବ କାହିଁକି ? ନିଜର ସମୟ ଓ ଶକ୍ତି ନଷ୍ଟ କରିବ କାହିଁକି ? ତଥାପି ବିଡମ୍ବନା ହେଉଛି ଯେ, ଅନେକ ଲୋକ ବିଶ୍ୱାସ କରନ୍ତି - "ଆମ ଭାଗ୍ୟରେ ଯାହା ହେବାର ଅଛି ତାହା ଆମର ହାତ ରେଖାରେ ଲେଖା ହୋଇଛି । ଜ୍ୟୋତିଷମାନେ ସେହି ରେଖାର ଭାଷା ବୁଝି ପାରନ୍ତି ।" ଲୋକମାନଙ୍କର ଏହି ବିଶ୍ୱାସ ଯୋଗୁ "ହସ୍ତ ରେଖା ବିଶାରଦ, ଜ୍ୟୋତିଷ ଶାସ୍ତ୍ର ବିଶାରଦ, ଅଙ୍କ ଜ୍ୟୋତିଷ ବିଶାରଦ ଭଳି ଅବୈଜ୍ଞାନିକ ତଥ୍ୟ ପ୍ରଦାନ କରୁଥିବା ବ୍ୟକ୍ତିଗଣ ସାଧାରଣ ଜନତାଙ୍କୁ ଭ୍ରମିତ କରିଥାନ୍ତି ।

### ଅଙ୍କ ବିଦ୍ୟାର ହିସାବ :

ଅଙ୍କ ବିଦ୍ୟାରେ ସମସ୍ତ ଅଙ୍କକୁ ବାରମ୍ବାର ଯୋଗକରି ଏକରୁ ନଅ ଅଙ୍କ ମଧ୍ୟରେ ରହିବା ଭଳି ଯୋଗ କରାଯାଏ । ସେହି ଯୋଗଫଳ ଆଧାରରେ ଜ୍ୟୋତିଷ ଆପଣଙ୍କ ଭବିଷ୍ୟତରେ ସମସ୍ତ ଉନ୍ନତି, ଅବନତି କଥା କହିପାରିବେ ବୋଲି ଦାବି କରିଥା'ନ୍ତି । ନ୍ୟୁମୋରଲୋଜି ଭାରତ ପାଇଁ ନୂଆ ପଦ୍ଧତି କିନ୍ତୁ କେତେକ

ପଣ୍ଡିତମାନେ ଏହା ସବୁ ପ୍ରାଚୀନ ଶାସ୍ତ୍ର ବୋଲି ଦାବି କରୁଛନ୍ତି । ଅଙ୍କ ଜ୍ୟୋତିଷର ଆଧାର ସିଦ୍ଧାନ୍ତ ବିଷୟରେ ପ୍ରଚଳିତ ମାନ୍ୟତା ହେଉଛି ଯେ, "ମନୁଷ୍ୟର ଜୀବନ ଅଙ୍କମାନଙ୍କ ଚକ୍ରରେ ସର୍ବଦା ଘୁରୁଥାଏ । ଏହି ଅଙ୍କଗୁଡ଼ିକର ଏକ ନିର୍ଦ୍ଧାରିତ ଗତିପଥ ରହିଛି ଏବଂ ପ୍ରତ୍ୟେକ ଅଙ୍କର ଏକ ବିଶିଷ୍ଟ ଗୁଣ ରହିଛି, ଯାହାକି ସମ୍ବନ୍ଧିତ ବ୍ୟକ୍ତି ସହିତ ସଂଯୋଗ କରିଥାଏ ।"

ଉପରୋକ୍ତ ସିଦ୍ଧାନ୍ତକୁ ପ୍ରମାଣିତ କରିବାପାଇଁ ଯେଉଁ ଉଦାହରଣ ସବୁ ଦିଆଯାଏ ସେଥିରେ ତାରିଖ ଓ ବର୍ଷର ସଂଖ୍ୟା ଗୁଡ଼ିକୁ ବିଚିତ୍ର ଭାବେ, ଯୋଗ - ବିଯୋଗ କରି ଅଭୀଷ୍ଟ ଅଙ୍କ ବାହାର କରାଯାଇଥାଏ । ସାଧାରଣତଃ ନେପୋଲିୟନ ବୋନାପାର୍ଟ, ହିଟଲର କିମ୍ବା ଆମେରିକାର ବିଶେଷ କିଛି ଐତିହାସିକ ଘଟଣାର ଉଲ୍ଲେଖ କରି ପ୍ରମାଣ କରିବାକୁ ଚେଷ୍ଟା କରାଯାଏ । ଆମେରିକାରେ ଯଦିଓ ହଜାର ହଜାର ମହତ୍ତ୍ୱପୂର୍ଣ୍ଣ ଘଟଣା ଘଟିଛି, କେବଳ ଅଙ୍କର ମହତ୍ତ୍ୱ ପ୍ରମାଣ କରିବାପାଇଁ ଗୋଟିଏ ଅଙ୍କ ଜ୍ୟୋତିଷ ପୁସ୍ତକରେ 4, 13, 22 ତାରିଖରେ ଘଟିଥିବା ମୋଟ 17 ଗୋଟି ଘଟଣାର ଉଲ୍ଲେଖ ଅଛି । ସେଥିରୁ କେତୋଟି ମାତ୍ର ସଂଖ୍ୟା ସହିତ ସମ୍ବନ୍ଧ ଜଣାପଡୁଛି, ଯଥା : ଆମେରିକାର 13 ଗୋଟି ରାଜ୍ୟ, ଆପୋଲ 13, ରାଷ୍ଟ୍ରୀୟ ଧ୍ୱଜରେ 13 ଗୋଟି ରଙ୍ଗ ରହିଛି ।

ଜଣେ ପ୍ରସିଦ୍ଧ ଭାରତୀୟ ଅଙ୍କଶାସ୍ତ୍ରୀଙ୍କ ତିନୋଟି ପୁସ୍ତକରେ ପରସ୍ପର ବିରୋଧୀ ସିଦ୍ଧାନ୍ତ ପ୍ରତିପାଦିତ ହୋଇଛି । ଗୋଟିଏ ପୁସ୍ତକରେ ଲେଖା ଅଛି - "ଯଦି କୌଣସି ବ୍ୟକ୍ତିଙ୍କ ଜନ୍ମ 23 ତାରିଖରେ ହୋଇଛି, ତେବେ ତାଙ୍କର "ଆତ୍ମାଙ୍କ" ଅଙ୍କ ହେବ ଦୁଇ ଯୁକ୍ତ ତିନି ଅର୍ଥାତ ପାଞ୍ଚ । ସେହି ବ୍ୟକ୍ତିଙ୍କ ସମ୍ପୂର୍ଣ୍ଣ ଜୀବନର ଭବିଷ୍ୟ ଫଳ ଏବଂ ଅନ୍ୟ "ଆତ୍ମାଙ୍କ" ଥିବା ବ୍ୟକ୍ତିଙ୍କ ସହିତ ତାଙ୍କର ସମ୍ପର୍କ କିପରି ରହିବ ଜାଣିବାପାଇଁ ପାଞ୍ଚ ଅଙ୍କକୁ ହିଁ ବ୍ୟବହାର କରାଯିବ ।"

ଦ୍ୱିତୀୟ ପୁସ୍ତକରେ ଲେଖା ଅଛି - "ଭବିଷ୍ୟତ ଫଳ ଜାଣିବା ପାଇଁ ତାରିଖର ବ୍ୟବହାର କରାଯାଏ । ଇଂରାଜୀ ପଦ୍ଧତିରେ ରାତ୍ରି 12 ଘଣ୍ଟା ସମୟରେ ତାରିଖ ବଦଳିଥାଏ । ସେହି ଜନ୍ମ ତାରିଖରେ ଶତାବ୍ଦୀର ସଂଖ୍ୟାକୁ ଯୋଗ କରାଯାଏ, ଅର୍ଥାତ ଯଦି କୌଣସି ବ୍ୟକ୍ତିଙ୍କ ଜନ୍ମ 21.04.1935ରେ ହୋଇଛି,

ତେବେ **21.04.35** ବୋଲି ହିଁ ଗଣନା କରାଯିବ । ସାଲ ଭିତରେ **19** ଲେଖିବା ଆବଶ୍ୟକ ନାହିଁ ।" ଲେଖକ ଏହି ପୁସ୍ତକରେ ଶତାବ୍ଦୀର ସମସ୍ତ ଅଙ୍କକୁ ଯୋଗକରିବା ଅନାବଶ୍ୟକ ବୋଲି କହିଛନ୍ତି ।

ତୃତୀୟ ପୁସ୍ତକରେ ଲେଖା ଅଛି – "କୌଣସି ଲୋକର ଯଦି ଜନ୍ମ ତାରିଖ **08.09.1969** ଅଛି ତେବେ ତାହାର ମୋଟ ଯୋଗଫଳ **6** ହେବ "ଆତ୍ମାଙ୍କ" ।

ଉପରୋକ୍ତ ସମସ୍ତ ଉଦାହରଣରୁ ସ୍ପଷ୍ଟ ହୋଇ ଯାଉଛି ଯେ, ଅଙ୍କବିଦ୍ୟାରେ ବିଜ୍ଞାନ ସମ୍ମତ ତଥ୍ୟ କିଛି ନାହିଁ । ଅଙ୍କବିଦ୍ୟାର କୌଣସି ନିଶ୍ଚିତ ସିଦ୍ଧାନ୍ତ ନଥାଇ ମଧ୍ୟ 'ଅଙ୍କଜ୍ୟୋତିଷ' ବିଜ୍ଞାନ ସମ୍ମତ ବୋଲି ଦାବି କରି ଜ୍ୟୋତିଷମାନେ ଲୋକମାନଙ୍କୁ ଭ୍ରମିତ କରୁଛନ୍ତି ।

ଆଜିକାଲି କେତେକ ଶିକ୍ଷିତବ୍ୟକ୍ତି ଗ୍ରହ, ନକ୍ଷତ୍ରର ପ୍ରଭାବକୁ ଫଳିତ ଜ୍ୟୋତିଷଶାସ୍ତ୍ର ଦ୍ୱାରା ଅବୈଜ୍ଞାନିକ ପଦ୍ଧତିରେ ଗଣନା କରି ଭବିଷ୍ୟବାଣୀ ଶୁଣାଉଥିବା ଜ୍ୟୋତିଷମାନଙ୍କୁ ଅସ୍ୱୀକାର କରୁଥିଲେ ମଧ୍ୟ 'ନ୍ୟୁମୋରଲୋଜି' ଏକ ବିଜ୍ଞାନ ସମ୍ମତ ଗଣନା ବୋଲି ବିଶ୍ୱାସ କରୁଛନ୍ତି । ସିନେମା ଜଗତରେ ଅଙ୍କବିଦ୍ୟାର ବହୁଳ ପ୍ରଚଳନ ଦେଖିବାକୁ ମିଳୁଛି । ସିନେମାର ନାମ, କଳାକାରଙ୍କ ନାମ ଆଦିର ବନାନରେ ପରିବର୍ତ୍ତନ କରି ସଫଳତା ପାଇବାକୁ ବିଶ୍ୱାସ କରୁଛନ୍ତି ।

ଗତ **1999** ଶତାବ୍ଦୀର ଅନ୍ତିମଦିନ ଓ **2000** ର ଆରମ୍ଭ (ଡିସେମ୍ବର **31** ତାରିଖ ରାତି **12** ଘଣ୍ଟା) ସମୟରେ ଗର୍ଭସ୍ଥ ଶିଶୁର ଜନ୍ମ ପାଇଁ ଲୋକମାନଙ୍କ ଭିତରେ ଯେଉଁ ଉତ୍ସାହ, ଉଦ୍ଦୀପନା ଦେଖା ଦେଇଥିଲା ତାହା ଅତୁଳନୀୟ ଥିଲା । ସେହିଭଳି **11.11.2011** ତାରିଖଦିନ ଗର୍ଭସ୍ଥ ଶିଶୁକୁ ଜନ୍ମ ଦେବା ପାଇଁ ଦେଶର ପ୍ରାୟ ସମସ୍ତ ଡାକ୍ତରଖାନାରେ ଲମ୍ବା ତାଲିକା ଥିଲା । ସ୍ୱାଭାବିକ ଜନ୍ମ ସମୟ ପୂର୍ବରୁ ଅପରେସନ କରି ଶିଶୁମାନଙ୍କୁ ମାଆ ଗର୍ଭରୁ ବାହାର କରି ଆଣିବାକୁ ସେମାନେ ଶୁଭ ବେଳରେ ଜନ୍ମ ବୋଲି କହୁଛନ୍ତି । ଅଙ୍କବିଦ୍ୟା ଉପରେ ବିଶ୍ୱାସ କରି ମଣିଷ ପ୍ରକୃତି ବିରୋଧୀ କାମ କରୁଛି । ଏହା କ'ଣ ସତରେ ବୁଦ୍ଧିମାନର କାମ ?

ଅଙ୍କର ସମ୍ବନ୍ଧ କେବଳ ତାରିଖ ପର୍ଯ୍ୟନ୍ତ ସୀମିତ ନୁହେଁ, ଏହାକୁ ଅକ୍ଷରଗୁଡିକ ସହ ମଧ୍ୟ ଯୋଡ଼ା ଯାଇଥାଏ । ଅଙ୍କ ଓ ଅକ୍ଷର ମଧ୍ୟରେ ସମ୍ବନ୍ଧ

ଯୋଡିବା ପାଇଁ ପ୍ରତ୍ୟେକ ଶବ୍ଦ ଭିତରେ ରହୁଥିବା ଅକ୍ଷରଗୁଡିକୁ ଗଣନାକ୍ରମେ ଯୋଗ କରାଯାଇଥାଏ, ଯଥା : ଜଣେ ବ୍ୟକ୍ତିଙ୍କ ନାମ 'ଚନ୍ଦ୍ର କାନ୍ତ' । ତାଙ୍କର ନାମାଙ୍କ ଜାଣିବା ପାଇଁ ତାଙ୍କ ନାମରେ ଥିବା ପ୍ରତ୍ୟେକଟି ଅକ୍ଷରଗୁଡିକର ଅଙ୍କଯୋଗ କରାଯିବ । କେବଳ ଇଂରାଜୀ ଅକ୍ଷରଗୁଡିକ (A ରୁ Z) ପାଇଁ ଅଙ୍କ ନିର୍ଦ୍ଧାରିତ ହୋଇଛି । ଇଂଲଣ୍ଡର ହସ୍ତରେଖା ବିଶାରଦ 'କିରୋ' ହିଁ ଅକ୍ଷର ପାଇଁ ଅଙ୍କ ନିର୍ଦ୍ଧାରିତ କରିଥିବା କଥା ଶୁଣିବାକୁ ମିଳେ । ଜନତାଙ୍କୁ ଏହିଭଳି ଧୋକା ଦେଉଥିବା ଅପରାଧରେ ସେ ଅବଶ୍ୟ ଜେଲ ଦଣ୍ଡ ଭୋଗ କରିଥିଲେ ।

ଅକ୍ଷରଗୁଡିକର ଅଙ୍କ ନିର୍ଦ୍ଧାରିତ ପଦ୍ଧତି ମଧ୍ୟ ପରସ୍ପର ବିରୋଧୀ ମତ ପ୍ରକାଶ କରୁଛି । ଜଣେ ବ୍ରିଟିଶ ଅଙ୍କ ଜ୍ୟୋତିଷ ଇଂରାଜୀ ଅକ୍ଷର 'C' କୁ 2 ନମ୍ବର କରୁଥିବା ବେଳେ, ଅନ୍ୟ ଜଣେ ଏହାକୁ 3 ନମ୍ବର ବୋଲି କହିଛନ୍ତି । ଜଣେ 'H' କୁ 5 ନମ୍ବର ବୋଲି କହିଛନ୍ତି । ଇଂରାଜୀ ବର୍ଣ୍ଣ ଅନୁସାରେ ଏହା 8 ହେବା ଉଚିତ । ଏହିପରି ଆହୁରି କିଛି ଭିନ୍ନତା ମଧ୍ୟ ଥାଇପାରେ ।

ଖବର କାଗଜ ମାନଙ୍କରେ ବିଜ୍ଞାପନ ପ୍ରକାଶିତ ହୁଏ । - "ଆପଣଙ୍କ ସମସ୍ୟାର ସମାଧାନ ପାଇଁ ପ୍ରଶ୍ନ ସହିତ ନିଜର ନାଁ ଏବଂ ଆପଣଙ୍କର ପସନ୍ଦର ଗୋଟିଏ ଫୁଲର ନାମ ଲେଖି ଅମପାଖକୁ ପଠାଇ ଦିଅନ୍ତୁ, ଆପଣଙ୍କର ସମସ୍ୟାର ଅସଲ ସମାଧାନ ଆମଠାରୁ ହାସଲ କରନ୍ତୁ ।" ପୂର୍ବରୁ ଜ୍ୟୋତିଷମାନେ କୋଷ୍ଠୀ ଗଣନା କରିବାପାଇଁ ବ୍ୟକ୍ତିର ଜନ୍ମ ତାରିଖ ଓ ସମୟ ଏବଂ ସ୍ଥାନ ଆଦି ଜାଣିବାକୁ ଚାହୁଁଥିଲେ । ବର୍ତ୍ତମାନର ହାଇଟେକ ଯୁଗର ଜ୍ୟୋତିଷମାନେ ଆଉ କାଗଜ ପେନସିଲରେ ଗଣନା କରୁନାହାନ୍ତି, ସିଧା କମ୍ପ୍ୟୁଟର କିମ୍ବା ଲ୍ୟାପଟପରେ ଗଣନା କରୁଛନ୍ତି ତେଣୁ ତାଙ୍କୁ କେବଳ ଆପଣଙ୍କ ନାମ ଓ ଫୁଲର ନାମ ମିଳିଗଲେ ସବୁ ଠିକେ ଠିକେ ବତେଇଦେବେ । ଆଜିକାଲି ହାଇଟେକ ଜ୍ୟୋତିଷମାନଙ୍କର ଚାହିଦା ବେଶୀ । ଏମାନଙ୍କର ଗ୍ରାହକ ସଂଖ୍ୟା ମଧ୍ୟ ଅଧିକ । ଲୋକେ ଭାବୁଛନ୍ତି ଯେଉଁମାନେ କାଗଜରେ ହିସାବ କରୁଛନ୍ତି, ସେମାନେ ଭୁଲ ବି କରିପାରନ୍ତି କିନ୍ତୁ କମ୍ପ୍ୟୁଟର ହିସାବ କେବେ ଭୁଲ ହେବନି । ମଜା କଥା ହେଉଛି - ନିଜେ କମ୍ପ୍ୟୁଟର ଇଞ୍ଜିନିୟର ହୋଇ

 

ମଧ୍ୟ ଜାଣି ପାରୁନାହାନ୍ତି ଯେ କମ୍ପ୍ୟୁଟରରେ ମଣିଷ ଯାହା ଷ୍ଟୋର କରିବ ତାହା ହିଁ ଦେଖାଇବ । ଭୁଲ ତଥ୍ୟ ଷ୍ଟୋର କରିଥିଲେ ଭୁଲ ଉତ୍ତର ବାହାରିବ ।

ସମସ୍ୟାର ସମାଧାନ ଆଶାରେ ପ୍ରଶ୍ନ କରିଥିବା ବ୍ୟକ୍ତିଙ୍କୁ ଜ୍ୟୋତିଷ କୌଣସି ଫୁଲର ନାମ କହିବାକୁ କହନ୍ତି । ଭାରତୀୟ ଜ୍ୟୋତିଷ ଫୁଲର ନାମର ଅକ୍ଷରଗୁଡ଼ିକୁ ଅଙ୍କ ହିସାବରେ ଯୋଗ କରନ୍ତି । ଯଦି କେହି ପ୍ରଶ୍ନ କରନ୍ତି - "ମୁଁ ମୋର ପ୍ରେମିକା ସହିତ ବିବାହ କରିପାରିବି କି ନାହିଁ ? ଏବଂ ଫୁଲର ନାମ 'ଗୋଲାପ' କହିଥା'ନ୍ତି, ତେବେ ଅଙ୍କଜ୍ୟୋତିଷ ଗୋଲାପର ବନାନକୁ 'କେରଳୀୟ ମତ' ଅନୁସାରେ,(କେରଳୀୟ ମତ ଏକ ଲମ୍ବା ବିଷୟ, ଏଠାରେ ଲେଖିବା ସମ୍ଭବ ନୁହେଁ) ହିସାବକରି ୨6 ବୋଲି କହିବେ, ସେଥିରେ 45 ଯୋଗକରି ଯୋଗଫଳକୁ 3ରେ ଭାଗକରି ଫଳ 47 ହେଲା ବୋଲି କହିବେ । ତା'ପରେ ସେ କହିବେ - "ଯେତେ ଚେଷ୍ଟା କଲେ ମଧ୍ୟ ତୁମେ ପ୍ରେମିକା ସହିତ ବିବାହ କରିପାରିବ ନାହିଁ ।" ଅନ୍ୟ ଜଣେ ଯଦି ପ୍ରଶ୍ନ କରିବ - "ମୁଁ ମୋର ପ୍ରେମିକାଠାରୁ ଦୂରେଇ ଯିବାକୁ ଚାହୁଁଛି, ପାରିବି କି ନାହିଁ ?" ଏବଂ ସେ ମଧ୍ୟ ଫୁଲର ନାମ ଗୋଲାପ କହିଛି । ଜ୍ୟୋତିଷ ପୂର୍ବ ଭଳି ଗଣନା କରିସାରି ଉତ୍ତର ଦେବେ - "ଯେହେତୁ ତୁମର ପ୍ରେମ ବ୍ୟାପାର ବହୁତ ଆଗେଇ ଯାଇଛି ତେଣୁ ତାକୁ ତ୍ୟାଗ କରିବା ସମ୍ଭବ ନୁହେଁ ।"

ଉପରୋକ୍ତ ଦୁଇଜଣଙ୍କ ପ୍ରଶ୍ନ ଓ ଉତ୍ତରକୁ ସୂକ୍ଷ୍ମ ଡିତରେ ବିଚାର କଲେ ସହଜରେ ଜଣାପଡୁଛି, ପ୍ରଥମ ବ୍ୟକ୍ତିଙ୍କର ତାଙ୍କ ପ୍ରେମିକା ସହିତ ଥିବା ସମ୍ପର୍କରେ ଗଭୀରତା ନାହିଁ ତେଣୁ ତାଙ୍କର ବିବାହ ପାଇଁ ସନ୍ଦେହ ସୃଷ୍ଟି ହୋଇଛି । ଦ୍ୱିତୀୟ ବ୍ୟକ୍ତିଙ୍କ ପ୍ରେମିକା ସହିତ ତାଙ୍କର ସମ୍ପର୍କ ହୁଏତ ସୀମାପାର କରିଯାଇଛି ତେଣୁ ସହଜରେ ତ୍ୟାଗ କରିହେବ ନାହିଁ । ଅଙ୍କଜ୍ୟୋତିଷ ଏକା ଭଳି ଗଣନା କରି ଦୁଇ ଜଣଙ୍କୁ ଦୁଇପ୍ରକାର ସମାଧାନ ଦେଇଥା'ନ୍ତି । ଅଙ୍କବିଦ୍ୟାର ରହସ୍ୟ ସେ ହିଁ ଜାଣନ୍ତି ।

ଏକ ରୁ ନଅ ପର୍ଯ୍ୟନ୍ତ ଅଙ୍କ ଉପରେ ଆଧାରିତ ବ୍ୟକ୍ତିଙ୍କ ସ୍ୱଭାବକୁ କେବଳ ନଅ ଭାଗରେ ବାଣ୍ଟି ବିଚାର କରିବା କାରଣଟି ନିହାତି ଅସଙ୍ଗତ । ପ୍ରତ୍ୟେକ ବ୍ୟକ୍ତିର ସ୍ୱଭାବ, ବିଚାର ଏବଂ ରୁଚି ଅନ୍ୟ ବ୍ୟକ୍ତିଙ୍କଠାରୁ ଅଲଗା ହୋଇଥାଏ । ସେହିଭଳି ପ୍ରତ୍ୟେକ ବ୍ୟକ୍ତିଙ୍କ ହାତର ରେଖା ମଧ୍ୟ ସମାନ ନଥାଏ । ହସ୍ତରେଖା

ଗୁଡିକ ମଣିଷର ବୟସ ଅନୁସାରେ ସାମାନ୍ୟ ପରିବର୍ତ୍ତିତ ହୋଇଥାଏ, ତେଣୁ ହସ୍ତରେଖାକୁ ଦେଖି ସଠିକ ଭାବେ କେହି ଭବିଷ୍ୟବାଣୀ କରିପାରିବା ସମ୍ଭବ ନୁହେଁ । ହସ୍ତରେଖା ବିଶେଷଜ୍ଞମାନଙ୍କ କଥାକୁ ଯଦି ଆପଣ ଧ୍ୟାନ ପୂର୍ବକ ଶୁଣିବେ ତେବେ ବୁଝି ପାରିବେ ଯେ, ଆପଣଙ୍କ ଭବିଷ୍ୟ କଥା କହୁନାହାନ୍ତି ବରଂ ଆପଣଙ୍କର ପ୍ରଶଂସା କରୁଛନ୍ତି, ଯଥା: "ଆପଣ ଜଣେ ଦୟାବାନ ବ୍ୟକ୍ତି, ଅନ୍ୟର ଦୁଃଖ ଦେଖି ସହି ପାରନ୍ତିନାହିଁ, ସେଥିପାଇଁ ଆପଣ ଯଥାସାଧ୍ୟ ସାହାଯ୍ୟ କରିବାକୁ ଚେଷ୍ଟା କରନ୍ତି ।"ଏହିଭଳି କଥାଶୁଣି ଯେତେ ନିଷ୍ଠୁର ବା ଲୋଭୀଲୋକ ହେଲେ ମଧ ଖୁସି ହୋଇଯିବ । ଭବିଷ୍ୟ ବିଷୟରେ ଯାହା କହିବେ ସବୁ ସର୍ତ୍ତମୂଳକ ଥିବ । ଆପଣ ଏୟା କଲେ ସେୟା ହେବ, ସେୟା କଲେ ଏୟା ହେବ । ତେଣୁ ଆପଣଙ୍କର ସଫଳତା ବା ବିଫଳତା ପାଇଁ ଆପଣ ହିଁ ଦାୟୀ, ସେ ନୁହନ୍ତି । ତାଙ୍କର ପାଉଣା ପାଇବାରେ କୌଣସି ଅସୁବିଧା ନାହିଁ ।

ଆଜିର ସମୟରେ ଆମର ଇଲେକ୍ଟ୍ରୋନିକ୍ସ ଏବଂ ସୋସିଆଲ ମିଡ଼ିଆର ପ୍ରଭାବ ଯୋଗୁ ଧର୍ମଗୁରୁ, ଜ୍ୟୋତିଷ ଓ ରାଜନୈତିକ ନେତାମାନଙ୍କ ମୁଣ୍ଡରେ ନିତି ନୂଆ ନୂଆ ଭିତ୍ତିହୀନ ବିଶ୍ୱାସ ଜନ୍ମ ନେଉଛି । ସେସବୁ ଗଣମାଧ୍ୟମରେ ପ୍ରଚାର କରି ନିଜର ସ୍ୱାର୍ଥ ସାଧନ କରୁଛନ୍ତି । ତେଣୁ ଜନସାଧାରଣ ନିଜର ତର୍କ ବୁଦ୍ଧି ଓ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କରି ଏମାନଙ୍କର ମାୟାଜାଲରୁ ନିଜକୁ ମୁକ୍ତ ରଖନ୍ତୁ ।

*****<>*****

## "କାଳ୍ପନିକ ଈଶ୍ୱର ନଥିଲେ ସତରେ ଦୁନିଆରେ ନାସ୍ତିକ ବୋଲି କେହି ନଥା'ନ୍ତେ । ସତରେ ଈଶ୍ୱର ଥିଲେ ସେ କେବେ ହେଲେ ମଣିଷକୁ ନାସ୍ତିକ ହେବା ଭଳି ବୁଦ୍ଧି ଦେଇନଥାନ୍ତା ।"

# ଈଶ୍ୱର କିଏ ଓ କେଉଁଠି ?

ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରମାଣିତ କରିବା ପାଇଁ ତର୍କ ଦିଅନ୍ତି – "ଏତେ ବିରାଟ ବ୍ରହ୍ମାଣ୍ଡର ସୃଷ୍ଟି ଓ ଏତେ ବଡ ସଂସାରକୁ ଚଳାଇବା ପଛରେ ନିଶ୍ଚୟ ଏକ ଅଦୃଶ୍ୟ ମହାନ ଶକ୍ତି ବିଦ୍ୟମାନ ଅଛି । ସେହି ଶକ୍ତି ହିଁ 'ଈଶ୍ୱର' । କର୍ତ୍ତା ବିନା ଏସବୁ ସୃଷ୍ଟି ସମ୍ଭବ କିପରି ହେବ?" ସେହିମାନଙ୍କୁ ଅନ୍ୟ ଏକ ତର୍କସଙ୍ଗତ ପ୍ରଶ୍ନ କରା ଯାଇପାରେ – "ଯଦି କର୍ତ୍ତା ବିନା କୌଣସି କର୍ମ ସମ୍ଭବ ନୁହେଁ ତେବେ ତଥାକଥିତ ଈଶ୍ୱରଙ୍କୁ ମଧ ତିଆରି କରିଥିବା ଶକ୍ତି କିଛି ଗୋଟିଏ ଥିବ । ସେ ପୁଣି କିଏ ?"

ଆଦିମାନବ ଯେବେ ବିକଶିତ ହେବାକୁ ଲାଗିଲା ସେ ଆଖ ପାଖ ଜିନିଷ ସବୁକୁ ଦେଖି ବିସ୍ମୟ ପ୍ରକାଶ କଲା । ତା' ମନରେ ପ୍ରଶ୍ନ ଉଠିଲା – "ଏସବୁ କିପରି ତିଆରି ହେଲା ?" ସେତେବେଳେ ଯେଉଁମାନେ ଟିକିଏ ଅଧିକ ଚାଲାକ ବା ବୁଦ୍ଧିଆ ଥିଲେ ସେମାନେ ବିଭିନ୍ନ ଦେବତାଙ୍କ କଳ୍ପନା କରି ସାଧାରଣ ଲୋକଙ୍କୁ ବୁଝାଇଥିଲେ । ଫଳରେ ସେମାନେ ପ୍ରଭୁତ୍ୱ ବିସ୍ତାର କରି ବସିଲେ । ଏଇ ବୁଦ୍ଧିଆ ବର୍ଗର ଲୋକମାନେ ପରେ ପରେ ବ୍ରାହ୍ମଣ, ପୁରୋହିତ ଓ ଧର୍ମଗୁରୁ ହୋଇଗଲେ । ସାଧାରଣ ଲୋକଙ୍କ ମନରେ ଅନେକ ସହଜାତ ପ୍ରଶ୍ନସବୁର ଉତ୍ତରରେ କଳ୍ପିତ ଈଶ୍ୱରଙ୍କୁ ଆରୋପିତ କରିବାକୁ ଲାଗିଲେ ।

ବେଦମାନଙ୍କରେ ବିଭିନ୍ନ ପ୍ରାକୃତିକ ସ୍ଥିତି ପାଇଁ ଅଲଗା ଅଲଗା ଦେବୀ ବା ଦେବତାଙ୍କ କଳ୍ପନାରୁ ଏହା ସ୍ପଷ୍ଟ ପ୍ରମାଣିତ ହୋଇଯାଉଛି ଯେ ବ୍ରାହ୍ମଣମାନେ ବିଭିନ୍ନ ଅଦୃଶ୍ୟ ଶକ୍ତିକୁ କାରଣ ରୂପେ ଦର୍ଶାଇ ସେହିସବୁ ପ୍ରାକୃତିକ ଘଟଣା ଦ୍ୱାରା ଘଟୁଥିବା କ୍ଷତିରୁ ରକ୍ଷା ପାଇବା ପାଇଁ ଉକ୍ତ ଘଟଣା ସମ୍ବନ୍ଧିତ ଦେବତାଙ୍କୁ ପ୍ରସନ୍ନ ରଖିବାର ପ୍ରେରଣା ଦେଲେ । ଉଦାହରଣ ସ୍ୱରୂପ ଜଳର ଦେବତା 'ବରୁଣ' ଅତି ବର୍ଷା ବା କମ ବର୍ଷା ହେଲେ ବରୁଣଙ୍କୁ ପୂଜା ଅର୍ଚ୍ଚନା କରା ଯାଉଥିଲା । ଝଡ଼, ତୋଫାନ ହେଲେ ବାୟୁ ଦେବତାଙ୍କୁ ପୂଜା ହେଉଥିଲା । ଖରା ଟାଣହୋଇ ବେଶୀ ଗରମହେଲେ ସୂର୍ଯ୍ୟ ଦେବତାଙ୍କୁ ପୂଜା କରାଯାଉଥିଲା । ଅଗ୍ନି, ଇନ୍ଦ୍ର, ଯମ, କୁବେର, ମରୁତ, ଅଶ୍ୱିନୀ କୁମାର ଇତ୍ୟାଦି ଦେବତାଙ୍କ ଅସ୍ତିତ୍ୱ ଏହିପରି ମନୁଷ୍ୟର ବିକାଶ ଏବଂ

ଆବଶ୍ୟକତାର ବୃଦ୍ଧି ସହିତ ଗୋଟିଏ ପରେ ଗୋଟିଏ ସୃଷ୍ଟିହୋଇ ଆସିଲେ । ରୋଗ ପାଇଁ ଅଶ୍ୱିନୀ କୁମାର, ଧନ ପାଇଁ କୁବେର ଓ ଲକ୍ଷ୍ମୀ, ବିଦ୍ୟା ପାଇଁ ଗଣେଶ ଓ ସରସ୍ୱତୀ, ମୃତ୍ୟୁ କବଳରୁ ରକ୍ଷା ପାଇବା ପାଇଁ ଯମ ଓ ଶନି ଦେବତା । ଏହିଭଳି ବିଭିନ୍ନ ଦେବୀ ଦେବତାଙ୍କ କଳ୍ପନା କରା ଯାଇଛି । ତଥାପି ସୃଷ୍ଟିରେ ଆହୁରି ଅନେକ ପ୍ରାକୃତିକ ଘଟଣା ଘଟୁଛି ଯାହାର କାର୍ଯ୍ୟ ଓ କାରଣ ଅବୁଝା ରହି ଯାଉଛି ଦେଖି ବୁଦ୍ଧିଆ ବର୍ଗ ସର୍ବଶକ୍ତିମାନ, ସର୍ବବ୍ୟାପ୍ତ, ସର୍ବଜ୍ଞାନୀ ଈଶ୍ୱରଙ୍କ କଳ୍ପନା କରିବସିଲେ । ସେ ହେଲେ ଉପରୋକ୍ତ ସମସ୍ତ ଦେବୀ ଦେବତାଙ୍କ ଠାରୁ ଶ୍ରେଷ୍ଠ ଏବଂ ତାଙ୍କର ନିର୍ଦ୍ଦେଶରେ ଅନ୍ୟ ସବୁ ଦେବୀ ଦେବତା ପରିଚାଳିତ ହେବାକୁ ଲାଗିଲେ ।

ଈଶ୍ୱରଙ୍କ ରୂପରେ ବ୍ରାହ୍ମଣ ଓ ଧର୍ମଗୁରୁଙ୍କ ହାତମୁଠାକୁ ଏଭଳି ଏକ ଚଳନ୍ତି ମୁଦ୍ରା ଆସିଗଲା ଯାହା କି ଆଜି ପର୍ଯ୍ୟନ୍ତ ଚଳୁଛି । ସେ ମୁଦ୍ରାକୁ ଯେଉଁଠି ଚାହିଁଲେ ଚଳେଇ ହେବ । ଲୋକଙ୍କ ସାମାନ୍ୟ ବିକାଶ ଘଟୁଥିବା ବେଳେ ବୁଦ୍ଧିଆଲୋକଙ୍କ ବିକାଶ ଟିକିଏ ଅଧିକ ମାତ୍ରାରେ ହେଲା । ସେମାନେ ଏହି ମୁଦ୍ରାକୁ ଏଭଳି ଭାବେ ମହିମାମଣ୍ଡିତ କରିବସିଲେ ଯେ ତା' ବିନା ଜୀବନରେ ସଫଳତା ହାସଲ କରିବା ଆଦୌ ସମ୍ଭବ ନୁହେଁ ବୋଲି ଅନ୍ୟମାନଙ୍କ ମନରେ ଏକ ଅମୂଳକ ବିଶ୍ୱାସ ଗଢି ଉଠିଲା ।

ସେହି ଅମୂଳକ ବିଶ୍ୱାସ ଆଜି ମଧ୍ୟ ବଞ୍ଚି ରହିଛି । ବର୍ତ୍ତମାନ ବୈଜ୍ଞାନିକ ଯୁଗରେ ତୀବ୍ର ଗତିରେ ବିକାଶ ଘଟୁଥିବା ସତ୍ତ୍ୱେ ଈଶ୍ୱରଙ୍କ ଅସ୍ତିତ୍ୱ ଭଳି ଭିତିହୀନ ବିଶ୍ୱାସ ଜମିରହିଛି । କେବେ ଯଦି କେଉଁ ବାସ୍ତବବାଦୀ ବିଚାରକ କଳ୍ପିତ ଈଶ୍ୱରଙ୍କ ସମ୍ପର୍କରେ ନାସ୍ତିବାଣୀ ପ୍ରକାଶ କରନ୍ତି ତା' ହେଲେ ତାକୁ ସମୂଳେ ନିଶ୍ଚିନ୍ନ କରିବା ପାଇଁ ସମସ୍ତ ଶକ୍ତି ସହିତ ବିଭିନ୍ନ ଅସ୍ତ୍ର ପ୍ରୟୋଗ କରାଯାଏ ।

ପ୍ରଥମ ଉଦାହରଣ ଦେଖନ୍ତୁ - "ଋଷି ଚାର୍ବାକ" ପ୍ରଥମେ କହିଲେ ଯେ ଈଶ୍ୱର କେହି କେଉଁଠି ନାହିଁ । ପରଲୋକ, ସ୍ୱର୍ଗ ଓ ନର୍କ ସବୁ ମିଥ୍ୟା । ଯାହା କିଛି ଅଛି ଏଇ ଜଗତରେ ଅଛି । ଜୀବନ କାଳରେ ସମସ୍ତେ ଯାହା ଅନୁଭବ କରନ୍ତି ତାହା ହିଁ ସତ୍ୟ । ବେଦଶାସ୍ତ୍ର ତ ପଣ୍ଡିତମାନେ ନିଜ ସ୍ୱାର୍ଥସିଦ୍ଧି ପାଇଁ ରଚନା କରିଛନ୍ତି । ଚାର୍ବାକଙ୍କ ସିଦ୍ଧାନ୍ତ ଥିଲା ଅତି ସହଜ ଓ ବୋଧଗମ୍ୟ । ସେଥିପାଇଁ ତାଙ୍କର ଶିଷ୍ୟଙ୍କ

ସଂଖ୍ୟା ଧିରେ ଧିରେ ବଢିବାକୁ ଲାଗିଲା । ସେ ଖୁବଶୀଘ୍ର ଲୋକପ୍ରିୟ ହୋଇଯିବାରୁ ତାଙ୍କର ବାଣୀକୁ ଲୋକେ 'ଲୋକାୟତ' ବୋଲି କହୁଥିଲେ । ଏହାଦେଖି ବ୍ରାହ୍ମଣମାନେ ଅସହିଷ୍ଣୁ ହୋଇ ପଡିଲେ ଏବଂ ତାଙ୍କର ବିରୋଧ କଲେ । ଫଳରେ "ଲୋକାୟତ" ଆଜି ସମ୍ପୂର୍ଣ୍ଣ ଭାବେ ଲୋପ ପାଇଯାଇଛି । ଚାର୍ବାକ ସିଦ୍ଧାନ୍ତ ସବୁ ହଜି ଯାଇଛି । ତାଙ୍କର ସବୁ କୃତିକୁ ଧ୍ୱଂସ କରିଦିଆ ଯାଇଛି ।

ଈଶ୍ୱରଙ୍କ ଅସ୍ତିତ୍ୱକୁ ନାସ୍ତି କରୁଥିବା ଦ୍ୱିତୀୟ ବ୍ୟକ୍ତି ହେଉଛନ୍ତି ଗୌତମବୁଦ୍ଧ । ସେ କହିଛନ୍ତି – "ଆମେ ଯେଉଁ ସୁଖ ବା ଦୁଃଖ ଭୋଗକରୁ ତା'ର କାରଣ ଆମେ ନିଜେ । ଏଥିପାଇଁ କୌଣସି ଈଶ୍ୱର ଆଦୌ ଦାୟୀ ନୁହନ୍ତି । ସେ ବିଷୟରେ ଚିନ୍ତା କରିବା ନିରର୍ଥକ । ଈଶ୍ୱର ବୋଲି ସଂସାରରେ କିଛି ନାହିଁ ।" ବୁଦ୍ଧଙ୍କର ବଳିଷ୍ଠ ଯୁକ୍ତି ଓ ଅକାଟ୍ୟ ତର୍କ ଆଗରେ ବ୍ରାହ୍ମଣ ପଣ୍ଡିତମାନେ ନିରୁତ୍ତର ହୋଇ ପଡୁଥିଲେ । ଫଳରେ ତାଙ୍କର ଶିଷ୍ୟଙ୍କ ସଂଖ୍ୟା ହଜାର ହଜାର ହୋଇ ବଢି ଯାଇଥିଲେ । ପ୍ରଥମତଃ ସେ ଏକ ରାଜ ପୁତ୍ର ଥିଲେ । ଏଣୁ ତାଙ୍କୁ ସହଜରେ ହରାଇବା ବା ହଟାଇବା ସମ୍ଭବ ହୋଇ ନଥିଲା । ଶେଷରେ ତାଙ୍କୁ କପଟରେ ବିଷପାନ କରାଇ ମାରି ଦିଅ ଯାଇଥିଲା । ବୁଦ୍ଧଙ୍କ ସିଦ୍ଧାନ୍ତ ସବୁ ଏତେ ବେଶୀ ପ୍ରଚାର ହୋଇ ସାରିଥିଲା ଯେ ଚାର୍ବାକଙ୍କ ଭଳି ତାଙ୍କୁ ନିଶ୍ଚିହ୍ନ କରିବା ସମ୍ଭବ ହୋଇ ନଥିଲା । ଏଇଥିପାଇଁ ବ୍ରାହ୍ମଣମାନେ କୂଟନୀତି ପ୍ରୟୋଗକରି ବୁଦ୍ଧଙ୍କୁ ବିଷ୍ଣୁଙ୍କ ଏକ ଅବତାର ରୂପେ ଘୋଷଣା କରିଦେଲେ ଓ ବୌଦ୍ଧଧର୍ମକୁ ଭାରତରୁ ପ୍ରାୟ ଲୋପ କରିବାକୁ ଚେଷ୍ଟା କରିଥିଲେ ।

ହିନ୍ଦୁ ଧର୍ମଗ୍ରନ୍ଥମାନଙ୍କରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ନବମ ଅବତାର ରୂପେ ଉଲ୍ଲେଖ କରାଯାଇଛି । ଭାଗବତରେ କୁହାଗଲା ଯେ "ଯେବେ ଅସୁରମାନେ ବୈଦିକ ଧର୍ମକୁ ମାନିବାକୁ ଚାହିଁବେ, ସେମାନଙ୍କୁ ବୈଦିକ ଧର୍ମରୁ ବିରତ କରିବାପାଇଁ ବିଷ୍ଣୁ ବୁଦ୍ଧ ରୂପେ ଅବତାର ଗ୍ରହଣ କରିବେ । ସେ ନିଜର ମୋହକ ବାଣୀଦ୍ୱାରା ତାଙ୍କୁ ବୈଦିକ ଧର୍ମରୁ ବିରତ କରାଇବେ ।" (ଭାଗବତ -2.7.37)

ଏହିଭଳି ପ୍ରଚାର ବୌଦ୍ଧଧର୍ମର ମୂଳ ଉଦ୍ଦେଶ୍ୟକୁ ନଷ୍ଟ କରିବାରେ ଖୁବ ସାହାଯ୍ୟ କଲା । ଯେଉଁ ଲୋକମାନେ ବ୍ରାହ୍ମଣମାନଙ୍କ ଜାଲରୁ ନିଜକୁ ମୁକ୍ତ କରି

ବୌଦ୍ଧ ପାଇଥିଲେ, ସେମାନେ ଦ୍ୱନ୍ଦରେ ପଡିଗଲେ । ବୁଦ୍ଧ ଅବତାର କେବଳ ଅସୁରମାନଙ୍କୁ ବିଭ୍ରାନ୍ତ କରାଇ ବୈଦିକ ଧର୍ମରୁ ବିରତ କରାଇବାପାଇଁ ବିଷ୍ଣୁ ନିଜେ ଅବତାର ଗ୍ରହଣ କରିଛନ୍ତି ବୋଲି ଜାଣିବା ପରେ କେଉଁ ଲୋକ ବା ଚାହିଁବ ନିଜକୁ ଅସୁର ନାମରେ ପରିଚିତ କରିବା ପାଇଁ? କାରଣ ସେ ସମୟରେ ଅସୁର ଶବ୍ଦଟି ଏକ ଗାଳି ବା ଭର୍ତ୍ସନା ଭଳି ସମାଜରେ ଗ୍ରହଣ କରାଯାଉଥିଲା ।

ବ୍ରାହ୍ମଣମାନେ ବୁଦ୍ଧଙ୍କ ପ୍ରଭାବକୁ କିଭଳି ନଷ୍ଟ କଲେ ଏହା ଏକ ଅଲଗା ଇତିହାସ । ଏଇଠି କେବଳ ଏତିକି ଯଥେଷ୍ଟ ହେବ ଯେ ସେହି ସମୟର ସବୁଠାରୁ ବଡ଼ ନାସ୍ତିକ ଗୌତମ ବୁଦ୍ଧଙ୍କୁ ତାଙ୍କର ମୃତ୍ୟୁ ପରେ ଈଶ୍ୱରଙ୍କ ରୂପଦେଇ ବ୍ରାହ୍ମଣମାନେ ଚାଲାକିରେ ସଫଳତା ହାସଲ କରିଛନ୍ତି ।

ହଜାର ହଜାର ବର୍ଷ ଧରି ଈଶ୍ୱରଙ୍କ କାଳ୍ପନିକ ସତ୍ତାକୁ ପ୍ରଚାର କରିବା ଏବଂ ଶିକ୍ଷା ଦେବା ଫଳରେ ବଡ଼ ବଡ଼ ପ୍ରତିଭାଶାଳୀ ବିଚାରକ, ବୈଜ୍ଞାନିକ ଓ ବୁଦ୍ଧିଜୀବୀମାନେ ମଧ୍ୟ ଭ୍ରମିତ ହୋଇ ସେ ବିଷୟରେ ଚିନ୍ତା କରିବାକୁ ସାହାସ କଲେ ନାହିଁ । ଯେଉଁଠି ନିଜର ପୁରୁଷତ୍ୱ ବା ପ୍ରତିଭା ବଳରେ କାମ ହେବା କଥା ସେଇଠି ଈଶ୍ୱରଙ୍କ କୃପାର ସାହାଯ୍ୟ ପାଇବା ଆଶାରେ ନିଜକୁ ଠକି ଚାଲିଛନ୍ତି ।

ଈଶ୍ୱରଙ୍କ ସମ୍ବନ୍ଧରେ ବହୁ ପ୍ରଚାରିତ ବିଶେଷତ୍ୱମାନଙ୍କ ମଧ୍ୟରୁ କିଛିଟା ନିମ୍ନରେ ପ୍ରଦତ୍ତ କରିବା । କୁହାଯାଏ - "ଈଶ୍ୱର ସମସ୍ତ ପ୍ରାଣୀଙ୍କ ପିତା ଏବଂ ସମସ୍ତଙ୍କୁ ଭଲ ପାଆନ୍ତି ।" ଏଇଠି ପ୍ରଶ୍ନ ଉଠୁଛି - "ଯଦି ଈଶ୍ୱର ସମସ୍ତଙ୍କର ପିତା ଏବଂ ସମସ୍ତଙ୍କୁ ଭଲ ପାଆନ୍ତି, ତେବେ ସମାଜରେ କିଛି ଲୋକ ସୁଖୀ ଓ କିଛି ଲୋକ ଦୁଃଖୀ ରହନ୍ତି କାହିଁକି ? ସେ ତ ସର୍ବ ଶକ୍ତିମାନ, ସର୍ବଜ୍ଞ ଓ ସର୍ବ ବିଦ୍ୟମାନ । ସେ ନିଜର ସନ୍ତାନମାନଙ୍କୁ କେବଳ ସୁଖରେ ରଖୁନାହାନ୍ତି କାହିଁକି ? ସେମାନଙ୍କୁ ଦୁଃଖ ଦେବା, ଅକାଳ ମୃତ୍ୟୁ ଦେବା ଆବଶ୍ୟକ କାହିଁକି ?

ଦୁଃଖ, ସୁଖ, ରୋଗ ଆଦିକୁ ମଣିଷର କର୍ମଫଳ ବୋଲି କହିବାର ଅର୍ଥ କଅଣ ? "କରି କରାଉ ଥାଏ ମୁହିଁ ମୋ ବିନୁ ଅନ୍ୟ ଗତି ନାହିଁ" ସବୁ ଯଦି ସେ ହିଁ କରୁଛନ୍ତି ବା କରାଉଛନ୍ତି ତେବେ ମଣିଷର କର୍ମକରିବା ଅଧିକାର ରହିଲା କେଉଁଠି? ସେ ଯାହା କରାଉଛନ୍ତି ମଣିଷ ତ ତାହା ହିଁ କରୁଛି । ଏହି ପ୍ରଶ୍ନର ଉତ୍ତର ଦେବାକୁ

ଯାଇ ଯୁକ୍ତି କରନ୍ତି - "ଦୁଷ୍ଟ ପିଲାକୁ ସୁଧାରିବା ପାଇଁ ପିତା ଯେମିତି ଦଣ୍ଡ ଦିଅନ୍ତି ସେହିଭଳି ଈଶ୍ୱର ମଧ ଲୋକମାନଙ୍କର ପାପକର୍ମର ଦଣ୍ଡ ଦେବା ପାଇଁ ନିଜ ସନ୍ତାନଙ୍କୁ ଦୁଃଖ ବା କଷଣ ଦିଅନ୍ତି ।" ଏହା କ'ଣ ତର୍କ ସଂଗତ ଯୁକ୍ତି ? ଈଶ୍ୱର ନିଜେ ମଣିଷ ଦ୍ୱାରା ପାପକର୍ମ କରାଇବେ ପୁଣି ତାକୁ ପାପ ପାଇଁ ଦଣ୍ଡ ଦେବେ । ଈଶ୍ୱରଙ୍କ ଏହା କେଉଁ ଭଳି ନ୍ୟାୟ ?

ଅନ୍ୟ ଏକ ପ୍ରଶ୍ନ - "ସଦ୍ୟ ଜନ୍ମ ଗ୍ରହଣ କରିଥିବା ଶିଶୁଟି କ'ଣ ପାପ କରିଥାଏ, ଯାହାକୁ ରୋଗ ଗ୍ରସ୍ତ ବା ଅପାଙ୍ଗ କରି ଦିଅନ୍ତି ?" ଏହାକୁ ସିଦ୍ଧ କରିବାକୁ କୁହନ୍ତି - "ସେ ପୂର୍ବ ଜନ୍ମରେ ଯେଉଁ ପାପ କରିଥିଲା ତାକୁ ଏହି ଜନ୍ମରେ ଦଣ୍ଡ ମିଳିଲା ।" ପୁଣି ସେଇ ଗାଲୁଆ ଉତ୍ତର । ଗତ ଜନ୍ମରେ ମଧ ଈଶ୍ୱର ହିଁ ତ ତା'ଦ୍ୱାରା କର୍ମ କରାଇଥିଲେ ।

ଉପରୋକ୍ତ ତଥ୍ୟ ଗୁଡ଼ିକରୁ ଅନେକ କଥା ପ୍ରମାଣିତ ହେଉଛି ଯେ ଈଶ୍ୱର ନାମକ କୌଣସି ସତ୍ତା ନାହିଁ । ଯଦି ଅଛି ତେବେ ସେ ସର୍ବଜ୍ଞ ବା ସର୍ବଶକ୍ତିମାନ ନୁହେଁ । ଯଦି ସର୍ବଜ୍ଞ ଓ ସର୍ବଶକ୍ତିମାନ ତେବେ ସେ ପ୍ରାଣୀର ମଙ୍ଗଳକର୍ତ୍ତା ନୁହେଁ । ଈଶ୍ୱର ଯଦି ସର୍ବ ବିଦ୍ୟମାନ ତେବେ ବ୍ୟକ୍ତି ଅପରାଧ କରିବା ପୂର୍ବରୁ ହିଁ କାହିଁକି ରୋକି ପାରୁନାହିଁ ? ଅପରାଧ କଲାପରେ ତାକୁ ଦଣ୍ଡ ଦେବା ପାଇଁ ରହୁଛି କାହିଁକି ? ଅପରାଧୀକୁ ସିନା ସେ ଦଣ୍ଡ ଦେବ କିନ୍ତୁ ତା' ଦ୍ୱାରା ଯେଉଁ ନିରୀହ ସ୍ତ୍ରୀ ବା ପୁରୁଷଟି ଇଜ୍ଜତ ବା ଜୀବନ ହରାଇଲା ତାଙ୍କୁ କିଭଳି ନ୍ୟାୟ ମିଳିଲା ? ଏଥିରୁ ପ୍ରମାଣିତ ହେଉଛି -"ସେ କାହାକୁ କୃପା କରିବା କିମ୍ବା ଦଣ୍ଡ ଦେବାର ପ୍ରଶ୍ନ ଉଠୁନି ।"

ସଂସାରରେ ଯେତେ କାମ ହେଉଛି ସବୁ ମଣିଷ ହିଁ ନିଜର ବୁଦ୍ଧି, ଇଛା ଓ ଶକ୍ତି ଅନୁସାରେ କରୁଛି । ଯେଉଁ ବ୍ୟକ୍ତିମାନେ ନିଜର ବ୍ୟକ୍ତିଗତ ସ୍ୱାର୍ଥସାଧନ ପାଇଁ ସମାଜକୁ କ୍ଷତି କଲାଭଳି ଯେଉଁସବୁ କାମକରନ୍ତି ତାହା ମନ୍ଦକର୍ମ ବୋଲି କୁହାଯାଏ । ସେଥିପାଇଁ ସମାଜରେ ନ୍ୟାୟ ପ୍ରଣାଳୀ ତିଆରି ହୋଇଛି । ଦୋଷ କରିଥିବା ବ୍ୟକ୍ତିଙ୍କୁ ବିଭିନ୍ନ ବିଚାରବିଭାଗରେ ବିଚାରଣ କରି ଉଚିତ ଦଣ୍ଡ ଦେବା ବ୍ୟବସ୍ଥା ରହିଛି । ଦୋଷର ଗମ୍ଭୀରତା ଅନୁସାରେ ମୃତ୍ୟୁ ଦଣ୍ଡ ପର୍ଯ୍ୟନ୍ତ ଦିଆଯାଉଛି । ଈଶ୍ୱର ତାକୁ ଆସନ୍ତା ଜନ୍ମରେ ଦଣ୍ଡ ଦେବା ପର୍ଯ୍ୟନ୍ତ ଅପେକ୍ଷା କରାଯାଏ ନାହିଁ । ସେ କୋର୍ଟରେ

କହେ ନାହିଁ ଯେ ମୁଁ ତ ଈଶ୍ୱରଙ୍କ ନିର୍ଦ୍ଦେଶକ୍ରମେ ଏହି କୁକର୍ମ କରିଛି, ମୋତେ ମଣିଷ କାହିଁକି ଦଣ୍ଡ ଦେଉଛି ? ଏହାର ବିପରୀତ ଯେଉଁ ବ୍ୟକ୍ତିମାନେ ସମାଜର ମଙ୍ଗଳ ପାଇଁ କାମ କରୁଛନ୍ତି, ସେମାନଙ୍କୁ ସମ୍ମାନ ଦିଆଯାଉଛି ଏବଂ ପୁରସ୍କୃତ ମଧ୍ୟ କରାଯାଉଛି । ଈଶ୍ୱର ସେମାନଙ୍କୁ ଏହି ଜନ୍ମରେ କିମ୍ବା ଆସନ୍ତା ଜନ୍ମରେ ପୁରସ୍କୃତ କରିବା ପାଇଁ ଅପେକ୍ଷା କରାଯାଉନି ।

ଈଶ୍ୱରଙ୍କ ଦୟାଳୁତା ଗୁଣ ଉପରେ ମଧ୍ୟ ପ୍ରଶ୍ନ ଉଠୁଛି – "କୌଣସି ଦୁର୍ଘଟଣା ବା ପ୍ରାକୃତିକ ବିପର୍ଯ୍ୟୟରୁ ମଣିଷ ବଞ୍ଚିଗଲେ କୁହନ୍ତି, ଭଗବାନଙ୍କ ଦୟାରୁ ବଞ୍ଚିଗଲା । ଏହା କ'ଣ ସତ ? ଈଶ୍ୱରଙ୍କ ଇଛାରେ ହିଁ ତ ସେହି ବିପଦ ଆସିଥିଲା । ଈଶ୍ୱରଙ୍କ ଇଛାରେ ଆସିଥିବା ବିପଦ ଯଦି ଈଶ୍ୱର ହିଁ ଦୂର କରିଦେଲେ ସେଥିରେ ଈଶ୍ୱରଙ୍କ ଦୟାଳୁତା ସିଦ୍ଧ ହେବ କେମିତି ? ବରଂ ଏହାଦ୍ୱାରା ସିଦ୍ଧ ହେଉଛି ଯେ ଈଶ୍ୱର ତାଙ୍କର ବଡ଼ପଣ ସିଦ୍ଧ କରିବା ପାଇଁ ପ୍ରଥମେ ଆଘାତ ଦେଇ ପରେ ଔଷଧ ଲଗାଇବା ଭଳି ଏକ ନୀଚ ମନୋବୃତ୍ତିର ପରିଚୟ ଦେଉଛନ୍ତି ।

ଯଦି ଦାନ, ଦକ୍ଷିଣା ଏବଂ ପୂଜା ପାଠ ଦ୍ୱାରା ଈଶ୍ୱର ଖୁସିହୋଇ କାହାର ପାପକର୍ମକୁ କ୍ଷମା କରି ଦେଉଛନ୍ତି, ତାହେଲେ ତାଙ୍କ ଭଳି ଭ୍ରଷ୍ଟାଚାରୀ ଓ ଲାଞ୍ଚୁଆ ଆଉ କିଏ ଅଛି ? ଦୁଇ ଚାରି ଟଙ୍କାର ପ୍ରସାଦ ଦ୍ୱାରା ଯାହାକୁ ଫୁସଲା ଯାଇପାରେ ଏବଂ ଚୋରି, ଡକାୟତି, ହତ୍ୟା, ବଳାତ୍କାର ଭଳି ଅପରାଧମାନଙ୍କୁ ଯଦି କ୍ଷମାକରା ଯାଇପାରେ ସେଭଳି ଈଶ୍ୱରଙ୍କ ନ୍ୟାୟ ନିଷ୍ପକ୍ଷ ବୋଲି କିପରି କହିପାରିବା? ଯେକୌଣସି ସାଧାରଣ ବୁଦ୍ଧିର ମଣିଷ ବୁଝି ପାରିବ ଯେ ଯେତେ କୁକର୍ମ କଲେ ମଧ୍ୟ ଦୁଇଟଙ୍କାର ପ୍ରସାଦ ଚଢାଇ ଏବଂ ସ୍ତୁତି କରି ଯାହାକୁ ନିଜପକ୍ଷରେ ନିଆ ଯାଇପାରେ ସେ କେତେ କ୍ଷୁଦ୍ରମନା ହୋଇପାରେ? ସେ ପୁଣି ପ୍ରାଣୀଙ୍କ ମଙ୍ଗଳ କର୍ତ୍ତା ବୋଲି କିପରି ବିଶ୍ୱାସ କରିବା ?

ଈଶ୍ୱର ବିଶ୍ୱାସୀମାନେ କୁହନ୍ତି -"ଗତ ଜନ୍ମର ଫଳ ଏହି ଜନ୍ମରେ ମିଳେ ।" ଏହା ବି ଭୁଲ ପ୍ରମାଣିତ ହେଉଛି । କାରଣ ସେହିମାନେ କହୁଛନ୍ତି - "ଶରୀର ଓ ଆତ୍ମା ଦୁଇଟି ଅଲଗା ଜିନିଷ । ଆତ୍ମା ଅଜର, ଅମର, ଓ ନିର୍ଲିପ୍ତ । ସେ କିଛି କର୍ମ କରୁନି । ସବୁକର୍ମ ଶରୀର ହିଁ କରୁଛି । ଫଳ ଆସନ୍ତା ଜନ୍ମରେ ମିଳେ ।" ଏଇଠି

ବିରୋଧାଭାସ ରହୁଛି । କର୍ମ କରିଥିବା ଶରୀର ତ ମୃତ୍ୟୁ ପରେ ନଷ୍ଟ ହୋଇଯାଉଛି । ତେଣୁ ପ୍ରଶ୍ନ ଉଠୁଛି –"ଆସନ୍ତା ଜନ୍ମରେ ଦଣ୍ଡ କାହାକୁ ମିଳିବ? ଆତ୍ମାକୁ ନା ଶରୀରକୁ ? ଆତ୍ମାକୁ ମିଳିବାର ପ୍ରଶ୍ନ ଉଠୁନି କାରଣ ସେ ନିର୍ଲିପ୍ତ । ପୂର୍ବଜନ୍ମର ଶରୀର କରିଥିବା କର୍ମର ଫଳ ଏହି ଜନ୍ମର ନୂତନ ଶରୀରକୁ ମିଳିବା ନ୍ୟାୟସଙ୍ଗତ ଲାଗୁନି । ଏଠାରେ ଅଧ୍ୟାତ୍ମବାଦୀଙ୍କ ଆତ୍ମା ଓ ଶରୀର ସମ୍ବନ୍ଧୀୟ ଅବଧାରଣା ସମ୍ପର୍କରେ କର୍ମଫଳ ସିଦ୍ଧାନ୍ତକୁ ନେଇ ବିବେଚନା କଲେ ବୁଝା ପଡୁଛି - "ମନ୍ଦକାର୍ଯ୍ୟର ମନ୍ଦଫଳ, ଦୋଷୀକୁ ଆଦୌ ମିଳୁନି କିମ୍ବା ଭଲକର୍ମର ଭଲଫଳ ଭଲ ଲୋକକୁ ମିଳୁନି ।"

ଧର୍ମଗୁରୁମାନେ ନିଜର ପ୍ରଭୁତ୍ୱ ଜମେଇ ରଖିବା ପାଇଁ କୁହନ୍ତି - "ଗୁରୁ ବିନା କୌଣସି ବ୍ୟକ୍ତି ଈଶ୍ୱରଙ୍କ କୃପାପ୍ରାପ୍ତ କରିବା ସମ୍ଭବନୁହେଁ ।" ହିନ୍ଦୀରେ ଗୋଟିଏ ପ୍ରବାଦ ଅଛି - "ହରି ରୁଠେ ଗୁରୁ ଠୌର, ଗୁରୁ ରୁଠେ ନହିଁ ଠୌର" ଅର୍ଥାତ ହରି ରଷିଲେ ଗୁରୁ ରକ୍ଷାକରି ପାରିବ କିନ୍ତୁ ଗୁରୁ ରଷିଲେ କେହି ରକ୍ଷା କରିପାରିବନି । ଏଠାରେ ଈଶ୍ୱର ଅପେକ୍ଷା ଗୁରୁ ବଡ଼ । ଈଶ୍ୱର ଓ ଭକ୍ତ ମଝିରେ 'ଗୁରୁ' ଭୂମିକା, ଠିକ ଜଣେ ଲାଞ୍ଚୁଆ ଅଫିସର ଓ ଜନତା ମଝିରେ ରହୁଥିବା 'ଦଲାଲ' ଭଳି ।

ଈଶ୍ୱରସତ୍ତାକୁ ମାନୁଥିବା କିଛିଲୋକ ଯୁକ୍ତିଛଳରେ କୁହନ୍ତି "ଲୋକମାନେ ଈଶ୍ୱରଙ୍କ ଭୟରେ ମନ୍ଦ ବା ପାପକର୍ମରୁ ଦୂରେଇ ରହନ୍ତି ।" ବାସ୍ତବରେ ଏହା ସମ୍ପୂର୍ଣ୍ଣ ଭାବେ ଭୁଲ । ଈଶ୍ୱରଙ୍କ ଭୟରେ କେହି ନୈତିକତା ରକ୍ଷା କରେନାହି । ଇତିହାସ ଅନୁସାରେ ଈଶ୍ୱରଙ୍କ ପାଇଁ ସଂସାରରେ ଯେତେ ଅତ୍ୟାଚାର, ଅପରାଧ ଓ ରକ୍ତକ୍ଷୟ ହୋଇଛି ଅନ୍ୟ କୌଣସି କାରଣରୁ ସେତିକି ହୋଇନି । ଗୋଟିଏ ଈଶ୍ୱରଙ୍କ ସନ୍ତାନମାନେ ଅନ୍ୟ ଏକ ଈଶ୍ୱରଙ୍କ ସନ୍ତାନମାନଙ୍କୁ ଘୃଣା କରୁଛନ୍ତି କାହିଁକି ? ଧାର୍ମିକମାନଙ୍କ ଅନ୍ୟ ଏକ ଉଦାହରଣ - "ଲାଞ୍ଚ ନେଉଥିବା ଲୋକ ଏବଂ ଅନୈତିକ ବ୍ୟବସାୟ କରି ଅର୍ଜନ କରୁଥିବା ଧନରୁ, ଭଗବାନଙ୍କ ପାଇଁ ସେଥିରୁ କିଛି ଟଙ୍କା ଅଲଗା ରଖି ମନ୍ଦିରକୁ ଦାନ କରି ଦିଅନ୍ତି । ଯେଉଁଥି ପାଇଁ ପ୍ରତ୍ୟେକ ପ୍ରତିଷ୍ଠିତ ମନ୍ଦିରର ଆୟ ରାତି ଦିନ ବଢି ଚାଲିଛି ।" ସତରେ ଦେଖିବାକୁ

ମିଳୁଛି ଚୋରି, ଡକେଇତି, ହତ୍ୟା କରିପାରୁଥିବା ଲୋକମାନେ କେହି ନାସ୍ତିକ ନୁହନ୍ତି, ସମସ୍ତେ ଆସ୍ତିକ । ସେମାନଙ୍କର ଈଶ୍ୱର ପ୍ରତି ଭୟ ରହିଛି ତଥାପି ସବୁ କୁକର୍ମ କରୁଛନ୍ତି । ମଜାକଥା ହେଉଛି ଯେ ନିଜ କାମରେ ସଫଳତା ପାଇବା ପରେ ଭଗବାନଙ୍କୁ ଧନ୍ୟବାଦ ଦେଇ କୁହନ୍ତି - "ଭଗବାନ ପ୍ରଣାମ, ତୁମର ଦୟାରୁ ମୋର ଚୋରି କାମଟି ନିର୍ବିଘ୍ନରେ ସମ୍ପନ୍ନ ହୋଇଗଲା ।"

ମଧ୍ୟପ୍ରଦେଶର 'କଞ୍ଜର' ଜାତିର ଲୋକେ ଚୋରି କରିବାକୁ ଯିବା ପୂର୍ବରୁ ତାଙ୍କର ଇଷ୍ଟଦେବୀଙ୍କ ପାଖରେ ମାନସିକ କରି ଯାଆନ୍ତି । ଚମ୍ବଲ ଘାଟିର ଡାକୁ ଓ ବିଭିନ୍ନ ସହରର ଭଡାଟିଆ ହତ୍ୟାକାରୀମାନେ ନିଜ ନିଜର ଇଷ୍ଟ ଦେବତା ରଖିଥା'ନ୍ତି । କୁଖ୍ୟାତ ଡାକୁ 'ମାନସିଂହ' ଦୁର୍ଗା ଭକ୍ତଥିଲା । ଡକେଇତି କରିବା ପୂର୍ବରୁ ସେ ପ୍ରଥମେ ଦୁର୍ଗାଙ୍କ ପାଖରେଯାଇ ପୂଜା ଓ ପ୍ରାର୍ଥନା କରୁଥିଲା ଏବଂ ଅପହୃତ ଧନରାଶିରୁ କିଛି ଅଂଶ ସେହି ମନ୍ଦିରକୁ ଦାନ କରି ଦେଉଥିଲା ।

ସାମାଜିକ ଦାୟିତ୍ୱବୋଧ ଅନୁଭବ କରୁଥିବା ଧର୍ମଗୁରୁ କୁହନ୍ତି - "ଭଗବାନ କେବେ ମଣିଷକୁ ଏପରି ଜଘନ୍ୟ କୁକର୍ମ କରିବାକୁ କହନ୍ତି ନାହିଁ" ଯଦିଓ ସେଇମାନେ ସର୍ବଦା କହିଥାନ୍ତି -"ଈଶ୍ୱରଙ୍କ ଇଚ୍ଛାବିନା ଗଛର ପତ୍ର ବି ହଲିବନାହିଁ ।" ଆମେ ଯଦି ମାନିନେବା ଯେ ଭଗବାନ ପାପକର୍ମ କରିବାକୁ କହୁନାହାନ୍ତି, ତଥାପି ଈଶ୍ୱରଙ୍କ ନାମ ହିଁ ତ ସେମାନଙ୍କୁ ପାପକର୍ମ କରିବାକୁ ମାନସିକ ବଳ ଦେଉଛି । ଠାକୁରାଣୀ ମନ୍ଦିରରେ ବଳି ପକାଉଥିବା ଲୋକଟି ପ୍ରତ୍ୟେକ ପଶୁକୁ ହାଣିବା ପୂର୍ବରୁ ଚିତ୍କାର କରିଥାଏ "ଜୟ ମା' ଦୁର୍ଗେ" ବା ଅନ୍ୟ କୌଣସି ଦେବୀଙ୍କ ନାମ । ଯେଉଁମାନେ ଈଶ୍ୱରଙ୍କ ନାଁ ନେଇ କୁକର୍ମ କରନ୍ତି, ସେମାନଙ୍କର ମନରେ ଉତ୍ପନ୍ନ ହେଉଥିବା ଅପରାଧବୋଧ ମଧ୍ୟ ଈଶ୍ୱରଙ୍କ ନାମ ସ୍ମରଣରେ ଦୂରେଇ ଯାଉଛି ।

ଏଥିରୁ ପ୍ରମାଣିତ ହେଉଛି - ଈଶ୍ୱର ବିଶ୍ୱାସ ଲୋକମାନଙ୍କ ଭିତରେ ନୈତିକତା ସୃଷ୍ଟି କରିବା ପରିବର୍ତ୍ତେ ଲୋକଙ୍କ ମନରେ ଥିବା ନୈତିକ ଆସ୍ଥାକୁ ହିଁ ନଷ୍ଟ କରିବାରେ ବେଶୀ ସାହାଯ୍ୟ କରୁଛି । ସମାଜରେ ବାସ କରୁଥିବା ଲୋକର ନୈତିକବୋଧ ଅଳ୍ପ ବହୁତ ରହିଥାଏ । ସେ ପରିବାର, ସମାଜ ଓ ପ୍ରଶାସନର ନିୟମ କାନୁନକୁ ଭୟକରୁଥିବାରୁ ନିଜକୁ ସଂଯତ ଓ ଶୃଙ୍ଖଳିତ ରଖିବାକୁ ବାଧ୍ୟ ହୋଇଥାଏ ।

ଈଶ୍ୱରଙ୍କ କାରଣରୁ ସେତକ ମଧ୍ୟ ରହୁନି । କାରଣ ସେ ଜାଣେ - "ପାପ କଲେ ମନ୍ଦିରକୁ ଯାଇ, ଦାନ-ଦକ୍ଷିଣା ଦେଇ, ପୂଜା-ପାଠ କରିଦେଲେ, ସବୁ ପାପରୁ କ୍ଷମା ମିଳିଯିବ । କ୍ଷମା ନମିଳିଲେ ବି କିଛି ଦୁଃଖ ନାହିଁ, ଦଣ୍ଡ ତ ମିଳିବ ଆସନ୍ତା ଜନ୍ମରେ ।"

ଯଦି ଈଶ୍ୱରଙ୍କ ଅସ୍ତିତ୍ୱ ଏ ଦୁନିଆରେ ଗଢ଼ାଯାଇ ନଥାନ୍ତା ତା'ହେଲେ ସମ୍ଭବତଃ ଲୋକଙ୍କ ମଧ୍ୟରେ ନୈତିକତା ବଳବତ୍ତର ହୋଇ ରହିଥାନ୍ତା । ପଣ୍ଡା, ପୂଜାରୀ, ମୌଲା, ପାଦରୀମାନେ ଈଶ୍ୱରଙ୍କୁ ବିଭିନ୍ନ ରୂପେ ଲୋକମାନଙ୍କ ଭିତରକୁ ଆଣି ଲୋକଙ୍କୁ ଭ୍ରଷ୍ଟ ହେବାର ପଥ ପରିଷ୍କାର କରିଦେଇଛନ୍ତି ।

ଯେତେ ମନ୍ଦକର୍ମ କଲେ ବି ଭଗବାନଙ୍କୁ କ୍ଷମା ମାଗିଲେ ମିଳିଯିବ । ସେ ଯେ ପରମ ଦୟାଳୁ, ସଂସାରର ପିତା, ସନ୍ତାନର ଛୋଟ ଛୋଟ ଦୋଷ ତ କ୍ଷମା କରିବେ ନିଶ୍ଚୟ । ଏହିଭଳି ବିଶ୍ୱାସ ଲୋକଙ୍କ ମନରୁ ନୈତିକତାର ଆସ୍ଥାକୁ ଦୁର୍ବଳ କରିପକାଉଛି । ଅନ୍ୟଥା ଲୋକମାନେ କାହିଁକି ବର୍ଷସାରା ବିଭିନ୍ନ ତୀର୍ଥ ବା ମନ୍ଦିରକୁ ଦୌଡୁଛନ୍ତି ? ଘରେ ଘରେ ପୂଜା, ଯଜ୍ଞ, ଭଜନ, ପ୍ରାର୍ଥନା ସବୁ ଚାଲୁଥିବା ସତ୍ତ୍ୱେ କାହିଁକି ଚୋରି, ବେଇମାନି ଓ ଅତ୍ୟାଚାର ମଧ୍ୟ ଚାଲିଛି ? ସଂସାରରେ ଈଶ୍ୱରଙ୍କୁ ମାନୁଥିବା ଲୋକ ସଂଖ୍ୟା ବେଶୀ ଏବଂ ନମାନୁଥିବା ଲୋକ କମ ଥିବା ସତ୍ତ୍ୱେ ଏତେ ଅନୈତିକତା ଦେଖା ଯାଉଛି କାହିଁକି ?

ଈଶ୍ୱରଙ୍କ ଅସ୍ତିତ୍ୱ କାଳ୍ପନିକ ଏବଂ ଭିତିହୀନ । ତାଙ୍କୁ କେବଳ ବ୍ୟବସାୟିକ ଦୃଷ୍ଟିରୁ ଗଢ଼ା ଯାଇଛି । ସେଥିପାଇଁ ଈଶ୍ୱରଙ୍କୁ ମାନୁଥିବା ଲୋକଙ୍କ କିଛି ଲାଭ ହେଉ କି ନହେଉ ଧର୍ମର ଦୋକାନ ଖୋଲି ସରଳବିଶ୍ୱାସୀ ଲୋକଙ୍କୁ ସ୍ୱର୍ଗ, ମୋକ୍ଷ, ସୁଖ-ସମ୍ଭୋଗର କାଳ୍ପନିକ ଲୋଭ ଦେଖାଉଥିବା ଧର୍ମଗୁରୁମାନଙ୍କର ଧନ ଓ ଯଶପ୍ରାପ୍ତି ବହୁତ ହେଉଛି । ଏଥିରେ ସନ୍ଦେହ ନାହିଁ ।

ଈଶ୍ୱରଙ୍କ ଅସ୍ତିତ୍ୱକୁ ଗଢିବା ପଛରେ ଅନ୍ୟ ଏକ କାରଣ ମଧ୍ୟ ରହିଛି । ତା'ହେଲା - ଦଳିତ, ଶୋଷିତ ଓ ପଛୁଆ ବର୍ଗର ଲୋକମାନଙ୍କୁ ଯଥା ସ୍ଥିତିରେ ହିଁ ରହିବାପାଇଁ ମାନସିକ ସ୍ତରରେ ବାଧ୍ୟ କରିବା । ତା' ଫଳରେ ନିଜେ ଶୋଷଣ ବା ଉତ୍ପୀଡ଼ନ ଜନିତ ଦୁଃଖ ପାଇଁ କାହା ଉପରେ ଆକ୍ରୋଶ ନକରିବା ଏବଂ ସେହି ସ୍ଥିତିରୁ ମୁକ୍ତି ପାଇବାର ଆଶା ନକରିବା ଥିଲା ମୂଳ ଉଦ୍ଦେଶ୍ୟ । ଗତଜନ୍ମରେ କୁକର୍ମର ଫଳ

ଏବଂ ଏହିଜନ୍ମରେ ସବୁପ୍ରକାର କଷ୍ଟ ସହି ବ୍ରାହ୍ମଣ ଓ ଧର୍ମଗୁରୁଙ୍କ ସେବାକଲେ ଆସନ୍ତାଜନ୍ମରେ ସୁଫଳ ମିଳିବାର ମାନସିକ ସାନ୍ତ୍ୱନା ପାଇ ସେମାନେ ବଞ୍ଚୁଛନ୍ତି ।

ପଣ୍ଡିତ, ବ୍ରାହ୍ମଣ, ମୌଲା, ପାଦରୀ ଇତ୍ୟାଦି ଧର୍ମଗୁରୁମାନେ ନିଜର ତଥା ଶାସକଗୋଷ୍ଠୀଙ୍କ ସ୍ୱାର୍ଥ ପାଇଁ ଈଶ୍ୱର, ଆଲ୍ଲା ବା ଗଡ୍ ନାମରେ ଜନସାଧାରଣଙ୍କୁ ଭୁଲାଇ ରଖୁଛନ୍ତି । ଶାସକ ଏବଂ ଶୋଷକ ବର୍ଗ ମଧ୍ୟ ଧର୍ମଗୁରୁମାନଙ୍କୁ ସାହାଯ୍ୟ କରୁଛନ୍ତି । କାରଣ ସେମାନଙ୍କ ଦ୍ୱାରା ଶାସନକ୍ଷମତା ଅତି ସହଜରେ ପ୍ରାପ୍ତ ହେଉଛି । ଶୋଷଣ କରିବା ମଧ୍ୟ ସହଜ ହେଉଛି ।

*****<>*****

"ରଗବେଦ କହେ - 'ବିକୃତି ଅବମ ପ୍ରକୃତି' (ବିକୃତି ମଧ୍ୟ ଏକ ପ୍ରକୃତି) ଯଦି ତୁମର ଆସ୍ତିକତା ମୋ ପାଇଁ ବିକୃତି ଏବଂ ମୋର ନାସ୍ତିକତା ତୁମ ପାଇଁ ବିକୃତି ତେବେ ଆସନ୍ତୁ ଆମେ ଦୁହେଁ ସହମତ ହେବା ଯେ ଆମେ ପରସ୍ପର ପ୍ରତି ଅସହମତ । ଯଦି 'ନାସ୍ତିକ' ଧର୍ମ ବିରୋଧୀ କଥା କହିଲେ ଆସ୍ତିକମାନଙ୍କର ଧର୍ମୀୟ ଭାବନାକୁ ଆଘାତ ଲାଗୁଛି, ତେବେ ଆସ୍ତିକମାନେ ଯେତେବେଳେ ଖାଣ୍ଟି ମିଛକଥା କହି ବିଶ୍ୱାସ କରିବାକୁ ବାଧ୍ୟ କରନ୍ତି, ସେତେବେଳେ ନାସ୍ତିକମାନଙ୍କ ମନକୁ କ'ଣ ଆଘାତ ଲାଗୁନି ?"

# କରି କରାଉ ଥାଏ : କିଏ ?

ଆସ୍ତିକ ବିଚାରଧାରା ରଖୁଥିବା ପ୍ରତ୍ୟେକ ବ୍ୟକ୍ତିଙ୍କ ବିଶ୍ୱାସ – "ଭଗବାନ ଏହି ସଂସାରର ସୃଷ୍ଟି କର୍ତ୍ତା ଏବଂ ସେ ହିଁ ସବୁ ନିୟନ୍ତ୍ରଣ କରୁଛନ୍ତି ବା କରାଉଛନ୍ତି ।"

ସେଥିପାଇଁ ଓଡ଼ିଶାରେ ପ୍ରଚଳିତ ଅନେକ ପ୍ରବଚନ ଓ ଆପ୍ତବଚନ ଭିତରୁ "କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ" କଥାଟି ସଭିଏଁ କହିଥାଚି । ସମସ୍ୟାର ଉଚିତ ସମାଧାନ ଖୋଜିବା ପୂର୍ବରୁ ମାନସିକ ଶାନ୍ତି ପାଇଁ କହି ଦିଅନ୍ତି - "ଯାହା ହେବାକୁ ଥିବ ତାହା ହିଁ ହେବ, " ଭାଗ୍ୟ ଲିଖନ କେ କରିବ ଆନ ?", "ପ୍ରାରବ୍ଧର ଫଳ ତ ଭୋଗ କରିବାକୁ ପଡିବ" "ଦଇବ ଦଉଡି ମଣିଷ ଗାଈ ଯେଣିକି ଟାଣିବ ତେଣିକି ଯାଇ" "ସବୁ କିଛି ଈଶ୍ୱରଙ୍କ ଲୀଳା" ଏମିତି ଆହୁରି ଅନେକ ନକାରାତ୍ମକ ଆପ୍ତବଚନ କହି ହାତଯୋଡି ବସି ପଡନ୍ତି । ଅର୍ଥାତ ମୋର କିଛି କରିବାର ନାହିଁ ଯାହା କରିବେ ସବୁ ଭଗବାନ ଆମପାଇଁ କରିଦେବେ । ଏହା ହେଉଛି ମଣିଷର ପଳାୟନବାଦୀ ମାନସିକତା ।

ପୁଣି କୁହାଯାଏ - "ବୁଣିଥିଲେ ଦାଇ, ଦେଇଥିଲେ ପାଇ" (ସବୁକିଛି ମଣିଷ କର୍ମର ହିଁ ଫଳ ପାଏ) ଏବଂ "ଭଗବାନଙ୍କ ଇଛା ବିନା ଗଛର ପତ୍ର ବି ହଲିବ ନାହିଁ " । ଏହି ଦୁଇଟି ବକ୍ତବ୍ୟ ଉପରେ ଯଦି ବିଚାର କରିବା ତା'ହେଲେ ପରସ୍ପର ବିରୋଧୀ ମତ ପ୍ରକାଶ ପାଉଛି । ଯଦି ସବୁକିଛି ଭଗବାନଙ୍କ ଇଛାରେ ହିଁ ସମ୍ପାଦିତ ହେଉଛି, ତାହେଲେ ମଣିଷର କର୍ମର କାମ କ'ଣ ? ଯଦି ମଣିଷକୁ ତା' କର୍ମର ହିଁ ଫଳ ମିଳିବ, ତାହେଲେ ଏଥିରେ ଭଗବାନ କାହିଁକି ଆସି ହସ୍ତକ୍ଷେପ କରିବେ ?

"ଭଗବାନଙ୍କ ଇଛା ବିନା ଗଛର ପତ୍ର ବି ହଲିବ ନାହିଁ" ପ୍ରଶ୍ନ ଉଠୁଛି - "କେଉଁ ଭଗବାନ ? ଦୁନିଆରେ ତ ଅନେକ ଭଗବାନ ଅଛନ୍ତି । କୃଷ୍ଣ, ଆଲ୍ଲା, ଯୀଶୁ ପରେ ଆହୁରି ଅନେକ ଅଛନ୍ତି । ଏହିସବୁ ଦେବତାମାନେ କ'ଣ କୌଣସି ଗଛ ତଳେ ବସି ବିଚାର ବିମର୍ଶ କରି ଠିକ କରୁଛନ୍ତି ଯେ ଏହି ଗଛର ପତ୍ର ହଲିବ କି ନାହିଁ ? ଜଣେ କହୁଥିବ ମୁଁ ଚାହୁଁନି ପତ୍ର ହଲିବ, ଆଉଜଣେ କହୁଥିବ କି ମୁଁ ଚାହୁଁଛି ପତ୍ର ହଲିବ ? ଏ ପରିସ୍ଥିତିରେ ତ ଭଗବାନମାନଙ୍କୁ ପ୍ରତ୍ୟେକ ଗଛର କେତେ ପତ୍ର ଅଛି,

କେତେ ପତ୍ର ରଖିବାକୁ ହେବ, କେତେ ପତ୍ର ଗଛରୁ ଝାଡିବାକୁ ହେବ, ପତ୍ରମାନଙ୍କୁ ହଲାଇ କାହାକୁ ଥଣ୍ଡା କରିବାକୁ ହେବ କିମ୍ବା ପତ୍ର ନ ହଲାଇ ଥଣ୍ଡାକୁ ରୋକିବାକୁ ହେବ ଇତ୍ୟାଦି ଅନେକ ହିସାବ କରିବାକୁ ପଡୁଥିବ ।

ମନେକରନ୍ତୁ - ଗ୍ରୀଷ୍ମଦିନରେ କୌଣସି ଏକ ବୃକ୍ଷ ମୂଳରେ ଦୁଇଜଣ ଅଲଗା ଅଲଗା ଧର୍ମର ଲୋକ ବସିଛନ୍ତି ଏବଂ ଦୁହେଁ ଗରମ ଅନୁଭବ କରୁଛନ୍ତି । ଜଣେ ଲୋକର ଭଗବାନ ଗଛର ପତ୍ର ହଲାଇ ଅର୍ଥାତ ପବନ ବୁହାଇ ତାଙ୍କ ଭକ୍ତକୁ ଆରାମ ଦେବାକୁ ଚାହିଁବ କିନ୍ତୁ ଅନ୍ୟ ଲୋକର ଭଗବାନ ତାଙ୍କ ଧର୍ମର ଲୋକଙ୍କୁ ଆରାମ ଦେବାକୁ ଚାହୁଁ ନଥିବ, ତାହେଲେ ପରିସ୍ଥିତି କଅଣ ହେବ ? ସେଠାରେ ଦୁଇ ଭଗବାନ କ'ଣ ଝଗଡା କରିବେ, ନା ପାଖରେ ଦୁଇଜଣଙ୍କ ମଧ୍ୟରୁ ଜଣକୁ ପବନ ବାଜିବ ଅନ୍ୟ ଜଣକୁ ବାଜିବ ନାହିଁ ? ଏଇଟା ତ ସମ୍ଭବ ନାହିଁ ଯେ ପବନ ବୋହିଲେ ଜଣକୁ ବାଜିବ ଅନ୍ୟକୁ ବାଜିବନି । ଏହା ହେଉଛି ପ୍ରାକୃତିକ ନିୟମ । ପବନ ବୋହିଲେ ଗଛର ସବୁ ପତ୍ର ହଲିବ ଏବଂ ଗଛ ତଳେ ବସିଥିବା ଦୁଇଜଣ ଯାକ ଥଣ୍ଡା ଅନୁଭବ କରିବେ ।

କୁହାଯାଏ -"ଭଗବାନ ନ ଚାହିଁଲେ କୌଣସି କାମ ହେବନି" ତା'ହେଲେ ସେ ତ ଜାଣିଥିବେ କେଉଁ କାମ କେଉଁ ସମୟରେ ହେବା ଉଚିତ ? ତଥାପି ତାଙ୍କର ହିସାବ ଗଡ଼ ବଡ଼ ହୋଇ ଯାଉଛି କାହିଁକି ? ମନ୍ଦିରକୁ ଏକା ସାଙ୍ଗରେ ପାପୀ ଓ ଭକ୍ତ ଉଭୟ ଶ୍ରେଣୀର ଲୋକ ଯାଉଥିବାବେଳେ ଦୁର୍ଘଟଣା ଘଟାଇ ସମସ୍ତଙ୍କୁ ମାରି ଦେଉଛନ୍ତି କାହିଁକି ? ଜଣେପାପୀ ଦ୍ୱାରା ଜଣେ ଈଶ୍ୱରବିଶ୍ୱାସୀ କନ୍ୟାର ଯୌନଶୋଷଣ କରାଉଛନ୍ତି କାହିଁକି ? ଆତଙ୍କବାଦୀମାନଙ୍କ ଦ୍ୱାରା ନିରୀହ ଧାର୍ମିକ ଲୋକମାନଙ୍କର ହତ୍ୟା କରାଉଛନ୍ତି କାହିଁକି ?

କିଛି ବର୍ଷ ତଳେ ଦିଲ୍ଲୀର ଏକ ଡାକ୍ତରଖାନାରେ ଗୋଟିଏ ଛୁଆକୁ ଡାକ୍ତରମାନେ ମୃତ ଘୋଷିତ କରି ସାରିଥିଲେ କିନ୍ତୁ କିଛି ସମୟପରେ ଛୁଆଟି ପୁଣି ଜୀବିତ ହୋଇ ଉଠିଲା । ଅସଲ କଥା ହେଲା – "ବେଳେ ବେଳେ ମଣିଷର ଛାତିର ସ୍ପନ୍ଦନ ଓ ନାଡୀର ଗତି ଏତେ କ୍ଷୀଣ ହୋଇପଡେ ଯେ ତାହା ସାଧାରଣ ଭାବେ ପରୀକ୍ଷା କରିଥିବା ଡାକ୍ତରଙ୍କୁ ଭୁଲ ଲକ୍ଷଣ ମିଳିଥାଏ ।" ସେ ଯଦି ଛୁଆଟିକୁ ନେଇ

ଯାନ୍ତ୍ରିକ ପରୀକ୍ଷାଗାରରେ ECG ଭଳି କୌଣସି ପରୀକ୍ଷା କରିଥାନ୍ତେ ତେବେ ନିଶ୍ଚୟ ଜଣା ପଡିଥାନ୍ତା ବୁଆଟିର ମୃତ୍ୟୁ ହୋଇନି । ଏହିଭଳି ଘଟଣା ଦେଖି ଡାକ୍ତରଙ୍କୁ ଦୋଷ ନ ଦେଇ ଭଗବାନ ଚମତ୍କାର କରିଦେଲେ ବୋଲି ଲୋକେ ବିଶ୍ୱାସ କଲେ । କେତେକ କୁହନ୍ତି – "ମଣିଷ ମରିବା ପରେ ତାକୁ ଦ୍ୱିତୀୟ ଜନ୍ମ ପାଇଁ ଲାଇନରେ ଠିଆ ହୋଇ ପ୍ରତୀକ୍ଷା କରିବାକୁ ପଡେ । ଆଶ୍ଚର୍ଯ୍ୟ କଥା ଯେ ଗୀତା କହୁଛି –" ଆତ୍ମା ତୁରନ୍ତ ପୁରୁଣାଶରୀର ତ୍ୟାଗ କଲାପରେ ନୂତନ ଶରୀରରେ ପ୍ରବେଶ କରିଯାଉଛି।" ଏଣେ ଭଗବାନ ପ୍ରତ୍ୟେକ ଗଛର ପତ୍ର ସମୂହର ହିସାବ ରଖନ୍ତି, ସେ କ'ଣ ଜାଣି ପାରୁନାହାନ୍ତି କେଉଁ ଆତ୍ମା କାହା ଶରୀରରେ ପଶିବ?

ପ୍ରତ୍ୟେକ ଆସ୍ତିକ ବ୍ୟକ୍ତି ନିଜ ଧର୍ମକୁ ଉଚ୍ଚ ଓ ଅନ୍ୟ ଧର୍ମକୁ ନୀଚ ବୋଲି କହିବାକୁ ସର୍ବଦା ତତ୍ପର ଥାଏ, କାରଣ ପ୍ରତ୍ୟେକ ଧର୍ମର ଅନେକ ପ୍ରକାରର ଦୋଷ ତ୍ରୁଟି ଥାଏ । ଉଦାହରଣତଃ - ଜୈନ ଧର୍ମର ଦିଗାମ୍ବର ସାଧୁ ଲଙ୍ଗଳା ହୋଇ ସଭ୍ୟ ସମାଜରେ ମଧ୍ୟ ବୁଲନ୍ତି । ସେମାନେ ଜାଣନ୍ତି ନାହିଁ ଦାରିଦ୍ର୍ୟ କି ଜିନିଷ? କାରଣ ସେମାନଙ୍କୁ ମାଗଣାରେ ଖାଇବା ପିଇବା ମିଳିଯାଉଛି । ଅନ୍ୟ କୌଣସି ସାଧନ ସେମାନଙ୍କୁ ଦରକାର ନାହିଁ ତେଣୁ ସମାଜ ପାଇଁ ଶାରୀରିକ ବା ମାନସିକ ପରିଶ୍ରମ କରିବା ଦରକାର ନାହିଁ । ତଥାପି ମଣିଷ ନିଜ ଧର୍ମକୁ ସମାଲୋଚନା କରିବାକୁ ଭୟ କରେ । କଲେ ତାଙ୍କ ଭଗବାନ ତାଙ୍କର କିଛି କ୍ଷତି କରିଦେବ ବୋଲି ଭାବେ । ସେହି ମଣିଷ ଅନ୍ୟର ଧର୍ମକୁ ନିର୍ଭୟରେ ସମାଲୋଚନା କରେ । ସେ ଜାଣେ ଅନ୍ୟ ଧର୍ମର ଭଗବାନ ତାଙ୍କର କିଛି ବି କ୍ଷତି କରିପାରିବ ନାହିଁ । ତା' ମାନେ କ'ଣ ପ୍ରତ୍ୟେକ ଭଗବାନ କେବଳ ନିଜର ଭକ୍ତମାନଙ୍କ ପାଇଁ ହିଁ ସୀମିତ ରହୁଛି ?

ସମାଜରେ ଯେମିତି ପୋଲିସମାନଙ୍କର ଏରିଆ ନିର୍ଦ୍ଧାରଣ ହୋଇଛି ସେମିତି କ'ଣ ଭଗବାନମାନଙ୍କର ମଧ୍ୟ ସୀମା ନିର୍ଦ୍ଧାରଣ ହୋଇଛି ?

ଏଇଠି ପ୍ରଶ୍ନ ଉଠୁଛି - ଯଦି ଗୋଟିଏ ଧର୍ମର ଭଗବାନ ଅନ୍ୟ କୌଣସି ଧର୍ମର ଭକ୍ତକୁ ସୁଫଳ ଦେବା ବା ଦଣ୍ଡିତ କରିବାର ଅଧିକାର ନାହିଁ ତେବେ ଯେଉଁମାନେ ଧର୍ମ ପରିବର୍ତ୍ତନ କରୁଛନ୍ତି ସେମାନଙ୍କର କର୍ମର ହିସାବ କିପରିହେବ ? ମନେ କରନ୍ତୁ - ଜଣେ ଖ୍ରୀଷ୍ଟିୟାନ ବ୍ୟକ୍ତି ଗୋମାଂସ ଖାଇବା ପାଇଁ ଅନେକ

ଗୋହତ୍ୟା କରିଥିଲା । ସେ ଯଦି ଧର୍ମ ପରିବର୍ତ୍ତନ କରି ହିନ୍ଦୁ ହୋଇଗଲା, ତେବେ ତା'ର ଗୋହତ୍ୟା ଦୋଷର ପରିଣାମ କ'ଣ ହେବ ? ହିନ୍ଦୁ ଦେବତା କ'ଣ ତାକୁ କ୍ଷମା କରିଦେବେ ? ସେହିଭଳି ଯଦି ଜଣେ ହିନ୍ଦୁ ଧର୍ମ ପରିବର୍ତ୍ତନ କରି ଅନ୍ୟ ଧର୍ମକୁ ଯାଇ ଗୋହତ୍ୟା କରି ଗୋମାଂସ ଭକ୍ଷଣ କରିବ ତେବେ ତାକୁ କ'ଣ ଏହି ଜନ୍ମରେ କରିଥିବା ପାପ ପାଇଁ ଦଣ୍ଡ ମିଳିବନାହିଁ ? ତା'ର ମୃତ୍ୟୁ ପରେ କେଉଁ ଭଗବାନ ତାକୁ କେଉଁ ଯୋନିରେ ଜନ୍ମ କରାଇବେ ?

ପଚାରିଲେ ସମସ୍ତେ କୁହନ୍ତି - 'ଭଗବାନ ଏକ ।' ଏହା ଯଦି ସତ, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ପାର୍ଶି, ଶିଖ, ଜୈନ, ନିରଂକାରୀ, ରାଧାସ୍ୱାମୀ, ବୈଷ୍ଣବ ଇତ୍ୟାଦି ଅନେକ ଧର୍ମ ରହିଛି କାହିଁକି ? ଗୋଟିଏ ଧର୍ମରେ ବିଷ୍ଣୁ, ଶିବ, ବ୍ରହ୍ମା, ହନୁମାନ, ଗଣେଶ, ଦୁର୍ଗା, ଲକ୍ଷ୍ମୀ, ସରସ୍ୱତୀ, ଆଦି ଅନେକ ଦେବୀ ଦେବତା ଅଛନ୍ତି କାହିଁକି ? ଏହାର ଅସଲ କାରଣ ହେଉଛି - ମଣିଷର ଗୋଟିଏ ଭଗବାନ ଉପରେ ଆସ୍ଥା ବା ଭରସା ରହୁନି । ଏପରିକି ତାଙ୍କର କୌଣସି ଦେବୀ ଦେବତାଙ୍କ ଉପରେ ଆସ୍ଥା ରହୁନି । ସେଥିପାଇଁ ସେମାନେ ସବୁ ଦେବୀ ଦେବତାଙ୍କୁ ଛାଡି ତଥାକଥିତ ସ୍ୱୟଂଭୂ ଭଗବାନ ସାଜିଥିବା ମଣିଷମାନଙ୍କୁ ପୂଜା ଓ ପ୍ରାର୍ଥନା କରିବାକୁ ପଛାଉନାହାନ୍ତି । । 'ସତ୍ୟ ସାଇବାବା' ଓ 'ସିରିଡ଼ି ସାଇବାବା' ହେଉଛନ୍ତି ତାଜା ଉଦାହରଣ । ସାମାଜିକ ଜୀବନରେ ସେ ଦେଖୁଛି ବିଭିନ୍ନ କାମ ହାସଲ କରିବାପାଇଁ ବିଭିନ୍ନ ବିଭାଗକର ଅଧିକାରୀ, ଅଫିସରଙ୍କ ପାଖକୁ ଯିବାକୁ ପଡୁଛି । ସେହିଭଳି ଧନ, ବିଦ୍ୟା, ସ୍ୱାସ୍ଥ୍ୟ ଆଦି ପାଇଁ ନିର୍ଦ୍ଧାରିତ ଦେବୀ ଦେବତାଙ୍କ ପାଖକୁ ନଗଲେ ଫଳ ମିଳିବନି ଭାବୁଛନ୍ତି । ଓଲଟା ଦେବୀ ଦେବତା ଯଦି ଅସନ୍ତୁଷ୍ଟ ହୋଇଯିବେ ଯାହା ଅଛି ଛଡେଇନେବେ ବୋଲି ଭୟ ମଧ୍ୟ କରନ୍ତି ।

ମଣିଷ କର୍ମର ଫଳ ଦୁଇ ପ୍ରକାର - ସୁଖ ଓ ଦୁଃଖ । ସୁଖ ଓ ଦୁଃଖ ବି ଦୁଇ ପ୍ରକାର । ମାନସିକ ଓ ଶାରୀରିକ ସୁଖ-ଦୁଃଖ । ଦୁହେଁ ଦୁହିଁଙ୍କ ପରିପୂରକ । ଶରୀରକୁ ରୋଗ ହେଲେ ମନ ଦୁଃଖୀ ହୋଇଯାଏ, ମନ ଅଶାନ୍ତ ରହିଲେ ଶରୀର ଦୁର୍ବଳ ହୋଇଯାଏ । ଗୋଟିଏ କଥା ସ୍ପଷ୍ଟ ହେଉଛି - ମାନସିକ ସୁଖ ବା ଦୁଃଖ ଏକ ମନୋବୈଜ୍ଞାନିକ ଭାବନା । ଜଣେ ସାଧାରଣ ସମସ୍ୟାରେ ବିବ୍ରତ ହୋଇପଡେ,

 

ଅନ୍ୟ ଜଣେ ବହୁତ ବଡ଼ ସମସ୍ୟାରେ ମଧ୍ୟ ବିଚଳିତ ହୁଏ ନାହିଁ । ଏଥିପାଇଁ କେତେକ କୁହନ୍ତି - "ଈଶ୍ୱରଙ୍କ କୃପାରୁ ମୁଁ ମାନସିକ ବଳ ପାଉଛି ।" ହେଲେ ଯେଉଁମାନେ ଈଶ୍ୱରଙ୍କୁ ବିଶ୍ୱାସ କରୁନାହାନ୍ତି, ସେମାନେ ମାନସିକ ବଳ କେଉଁଠୁ ପାଉଛନ୍ତି ?

ଧର୍ମ ହିସାବରେ ସବୁଠାରୁ ମନ୍ଦକର୍ମ ହେଉଛି ହିଂସା । ତେଣୁ ହିଂସା କଲେ ପାପ ହୁଏ । ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖିଲେ ଯିଏ ଜୀବିତ ରହିପାରେ, ସିଏ ବଞ୍ଚିବା ପାଇଁ ଅମ୍ଳଜାନ ଗ୍ରହଣ କରେ, ତାକୁ ହିଁ ହତ୍ୟା କରାଯାଇପାରେ । ସେମିତି ଦେଖିଲେ ଗଛ, ମାଛ, ପଶୁ, ପକ୍ଷୀ ଓ ମଣିଷ ବଞ୍ଚିବା ପାଇଁ ଅମ୍ଳଜାନ ଗ୍ରହଣ କରନ୍ତି । ସେଗୁଡିକ ମଧ୍ୟରୁ ଯାହାକୁ ମଧ୍ୟ ହତ୍ୟା କରାଗଲେ ପାପ ହେବା କଥା । ପାପ ପାଇଁ ଭଗବାନ ଯଦି ଦଣ୍ଡ ନିର୍ଦ୍ଧାରିତ କରିଥାନ୍ତି ତେବେ ମଣିଷ କହିଁକି ଦଣ୍ଡ ଦେବାକୁ ପୋଲିସ, କୋର୍ଟ,କଚେରୀ କରି ଏତେ କଷ୍ଟ କରୁଛି ?

ଆସ୍ତିକମାନେ କୁହନ୍ତି - "କର୍ମର ଭଲ ଓ ମନ୍ଦ ଫଳ ଉଭୟ ଶରୀର ଓ ମାନସିକ ସ୍ତରରେ ଭୋଗ କରିବାକୁ ପଡିଥାଏ । କାରଣ କର୍ମ ତ ମନ ଓ ଶରୀର ମିଶି କରିଥାନ୍ତି । ଆତ୍ମାର କର୍ମ ସହିତ କୌଣସି ସମ୍ପର୍କ ନଥାଏ, କାରଣ ଆତ୍ମା କେବଳ ଜଣଙ୍କର ନୁହେଁ ଯେ ଜଣକ ଶରୀରରେ ହିଁ ରହିବ । ଯେଉଁ ଶରୀରରେ ଆତ୍ମା ରହିଲା ସେ ତା'ର ହେଲା ।"

ସେମାନେ ତଥାପି କହୁଛନ୍ତି - "ଆତ୍ମା ଅତୃପ୍ତ ରହିଲେ ଶୂନ୍ୟରେ ବିଚରଣ କରୁଥାଏ । ମୋକ୍ଷପ୍ରାପ୍ତ କଲେ ହିଁ କୌଣସି ଶରୀରରେ ପ୍ରବେଶ କରେ ।" ଏଗୁଡିକ ହେଉଛି ସମ୍ପୂର୍ଣ୍ଣ ବିରୋଧାଭାସ ଏବଂ ଗାଲୁଆମୀ ମନ୍ତବ୍ୟ । ଭଗବାନ କ'ଣ ଆତ୍ମାମାନଙ୍କୁ ନେଇ ମ୍ୟୁଜିକ ଚେୟାର ଖେଳ ଖେଳୁଛନ୍ତି ? ଏଣେ ଶରୀର କମ ଓ ଆତ୍ମା ବେଶୀ ।  ତେଣୁ ଯେଉଁ ଆତ୍ମାକୁ ଶରୀର ନ ମିଳୁଛି,  ସେ ମାସ ମାସ ବର୍ଷ ବର୍ଷ ଧରି ଶୂନ୍ୟରେ ଘୁରି ବୁଲୁଛି ?

ହିନ୍ଦୁ ପତି ଓ ପତ୍ନୀଙ୍କ ସମ୍ପର୍କ ସାତଜନ୍ମର ବୋଲି କୁହନ୍ତି । ଅନ୍ୟ କୌଣସି ଧର୍ମରେ ଏହି ବିଶ୍ୱାସ ନାହିଁ । ଏଇଠି ପ୍ରଶ୍ନ ଉଠୁଛି - "ବିବାହ ନକରି ଯେଉଁ ହିନ୍ଦୁ ସ୍ତ୍ରୀ ମୂଳରୁ ହିଁ ବେଶ୍ୟାବୃତ୍ତି କରୁଛି ସେ କ'ଣ ସାତଜନ୍ମ ପର୍ଯ୍ୟନ୍ତ ବେଶ୍ୟା ବୃତ୍ତି ହିଁ କରିବ

?" ତା' ପାଖକୁ ଯାଉଥିବା ପୁରୁଷମାନେ କ'ଣ ସାତଜନ୍ମ ପର୍ଯ୍ୟନ୍ତ ସେମିତି ଇମଟ ହୋଇ ଜନ୍ମ ହେବେ ? ଜନ୍ମ ଜନ୍ମାନ୍ତର କଥା ତ ଦୂରର କଥା ଅଧିକାଂଶ ସ୍ୱାମୀ ଓ ସ୍ତ୍ରୀ ଗୋଟିଏ ଜନ୍ମରେ ମଧ୍ୟ ମରିବା ପର୍ଯ୍ୟନ୍ତ ଏକାଠି ରହି ପାରୁନାହାନ୍ତି । ସ୍ୱାମୀ ଓ ସ୍ତ୍ରୀଙ୍କ ବୟସରେ ତାରତମ୍ୟ ରହୁଥିବାରୁ, ଜଣେ ଆଗ ତ ଆଉ ଜଣେ କିଛି ବର୍ଷ ପରେ ମରୁଛି । ଆଗରୁ ମରିଥିବା ସ୍ୱାମୀ ଜଣକର ଆତ୍ମା କ'ଣ ଶୂନ୍ୟରେ ଯାଇ ସେହି ସ୍ତ୍ରୀ ପାଇଁ ହିଁ ପ୍ରତୀକ୍ଷା କରିଥିବ?

ଉପରୋକ୍ତ ସମସ୍ତ ଉଦାହରଣ ଓ ଆଲୋଚନାରୁ, ଯେକୌଣସି ଉଦାର ମନୋବୃତ୍ତି ରଖୁଥିବା ଶିକ୍ଷିତ ବ୍ୟକ୍ତି ନିଶ୍ଚିତ ଭାବେ ବୁଝି ପାରିବେ ଯେ - "କରି କରାଉଥାଏ ମୁହିଁ " କହିବାର ଅର୍ଥ କଅଣ? ବୈଜ୍ଞାନିକ ତଥ୍ୟ ଉପରେ ଆଧାରିତ ସତ୍ୟଗୁଡିକୁ ଆଖି ଆଗରେ ଦେଖୁଥିବା ସତ୍ତ୍ୱେ ଈଶ୍ୱର ସତ୍ତାକୁ କଳ୍ପନାକରି, ଯେଉଁମାନେ ଆଖିବୁଜି ଦୁଧ ପିଉଛନ୍ତି, ସେମାନେ ପୁଣିଥରେ ଚିନ୍ତା କରିବା ଉଚିତ ।

*****<>*****

**"ଦୁନିଆରେ ଆଜି ପର୍ଯ୍ୟନ୍ତ ଯେତିକି ମାନବ ସମ୍ବଳ, ସମୟ ଓ ଧନ ତଥାକଥିତ ଈଶ୍ୱର ଅନୁସନ୍ଧାନ କରିବାରେ ବ୍ୟୟ ହୋଇଛି (ଈଶ୍ୱର ଆଜି ବି ଅଦୃଶ୍ୟ), ସେତିକି ମାନବ ସମ୍ବଳ, ସମୟ ଓ ଧନ ଯଦି ବୈଜ୍ଞାନିକ ଅନୁସନ୍ଧାନରେ ବ୍ୟୟ କରାଯାଇଥାନ୍ତା, ତେବେ ମାନବ ସଭ୍ୟତା ପ୍ରଗତି ପଥରେ ଶହେ ଗୁଣ ଆଗେଇ ଯାଇଥାନ୍ତା । ଆମ ପାଖରେ ହୁଏତ ଦୁଇ ହଜାର ବର୍ଷ ପୂର୍ବରୁ ବିଜୁଳି, ରେଡ଼ିଓ, ଟିଭି, ଇଣ୍ଟେର୍ନେଟ, ଜାହାଜ ଇତ୍ୟାଦି ଭୌତିକ ସାଧନ ଉପଲବ୍ଧ ହୋଇ ପାରିଥାନ୍ତା ।"**

# ତୀର୍ଥସ୍ଥଳୀମାନଙ୍କର ଅବୈଧ କାହାଣୀ

ଆଦିମ କାଳରୁ ମନ୍ଦିର ଓ ତା'ର ଚାରିପାର୍ଶ୍ୱ ପବିତ୍ର ସ୍ଥାନ ବା ତୀର୍ଥସ୍ଥଳ ବୋଲି ମାନ୍ୟତା ପାଇଛି । ସେଠିକୁ ଗଲେ ସାଂସାରିକ ସମସ୍ୟାରୁ କିଛି ସମୟ ପାଇଁ ମାନସିକ ଶାନ୍ତି ମିଳିଥାଏ ବୋଲି ଏକ ବଦ୍ଧମୂଳ ଧାରଣା ରହିଛି । ତୀର୍ଥସ୍ଥଳକୁ ଯାଇ କେତେଲୋକ ନିଜର ପାପକ୍ଷାଳନ କରିଥାନ୍ତି, ଆଉ କେତେଲୋକ ପୁଣ୍ୟଅର୍ଜନ କରି ତଥାକଥିତ ସ୍ୱର୍ଗରେ ନିଜର ସ୍ଥାନ ସୁରକ୍ଷିତ କରିଫେରନ୍ତି । ଏହିଭଳି ବିଭିନ୍ନ ଆଶା ଓ କାମନା ନେଇ ଧର୍ମଭୀରୁ ମଣିଷମାନେ ବର୍ଷର ବିଭିନ୍ନ ସମୟରେ ନିଜର ଦୈନନ୍ଦିନ କର୍ମ ସଂସ୍ଥାନରୁ ଛୁଟିନେଇ, ଏକା କିମ୍ବା ପରିବାର ସହିତ ତୀର୍ଥସ୍ଥଳକୁ ଦଉଡିଯା'ନ୍ତି । ତୀର୍ଥକରି ଫେରିଥିବା ଭକ୍ତମାନଙ୍କୁ ଯଦି ଆପଣ ପଚାରିବେ - "ଆପଣଙ୍କର ଯାତ୍ରା କିପରି ଥିଲା ?" ସେମାନଙ୍କ ଭିତରୁ ଅଧିକାଂଶ ଭକ୍ତ ଅଗଣିତ ଅସୁବିଧା ଓ ଅସନ୍ତୋଷ କାହାଣୀ ବଖାଣି ବସିବେ । ଯଥା : ଯାତ୍ରା ସମୟରେ ବିଭିନ୍ନ ଗାଡିର ଅସୁବିଧା, ତୀର୍ଥସ୍ଥଳର ରହଣି ଅବ୍ୟବସ୍ଥା, ସେଠିକା ଖାଦ୍ୟ ପାନୀୟର ଅସୁବିଧା, କାହାର କିଛି ଶାରୀରିକ ଅସୁସ୍ଥତା, କାହାର କିଛି ଚୋରି ହୋଇଥିବାର ଦୁଃଖ, ଶେଷରେ ବଜେଟରୁ ଅଧିକ ଆର୍ଥିକ କ୍ଷତି ଇତ୍ୟାଦି । ମୋଟ ଉପରେ "ଧନହାନୀ, ପ୍ରାଣ ପୀଡା" ଭୋଗ କରି ଫେରିଥିବା ଭକ୍ତଙ୍କ ମୁହଁରେ କିନ୍ତୁ ସନ୍ତୋଷର ଭାଷା ଥାଏ - "ଯାହା ହେଉ ପଛେ ଠାକୁରଙ୍କ ଦର୍ଶନ କରି ଫେରିଲୁ ।"

ଯେଉଁ ଠାକୁରଙ୍କ ଯେତେ ବେଶୀ ଚମତ୍କାରିତା ଓ ମହିମା ପ୍ରଚାର ହୋଇଛି ସେହି ଠାକୁରଙ୍କସ୍ଥାନରେ ସେତେବେଶୀ ଭକ୍ତଙ୍କ ଭିଡ ଜମାହୁଏ । ଯେଉଁଠି ମଣିଷମାନଙ୍କ ଭିଡ଼ହେବ ସେଇଠି ସବୁପ୍ରକାର ଆବଶ୍ୟକୀୟ ବସ୍ତୁର ବିକାକିଣା ହେବାଟା ସ୍ୱାଭାବିକ । ଗ୍ରାହକସଂଖ୍ୟା ବେଶୀ ହେଲେ ବ୍ୟବସାୟ ବି ଭଲହୁଏ । ଏହି ପର୍ଯ୍ୟନ୍ତ ତ ସବୁକିଛି ଠିକଅଛି, ହେଲେ ଏଇ ସ୍ଥାନମାନଙ୍କରେ କେତେକ ଅବ୍ୟବସ୍ଥା ମଧ୍ୟ ଦେଖିବାକୁମିଳେ । ଯାହା ପ୍ରତ୍ୟେକ ଭକ୍ତଙ୍କ ପାଇଁ ଜାଣିବା ଉଚିତ ଏବଂ ଆଗରୁ ସାବଧାନ ହେବା ମଧ୍ୟ ଉଚିତ । ମନ୍ଦିର ଓ ତୀର୍ଥସ୍ଥଳମାନଙ୍କରେ କେତେକ ଅସାଧୁ

ଲୋକଙ୍କ ଦ୍ୱାରା ଅନୁଚିତ ମାର୍ଗରେ ଧନ ଉପାର୍ଜନ ଚାଲିଛି । କେତୋଟି ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

(ଏଇଟା ଏକ ଅଲଗା ପ୍ରସଙ୍ଗ ହେବ ଯେ - ସର୍ବଶକ୍ତିମାନ ଠାକୁରଙ୍କ ଆଖି ଆଗରେ ସବୁ ଅପକର୍ମ ହେଉଛି, ଅଥଚ ସେ କିଛି ପ୍ରତିକାର କରୁନାହାନ୍ତି କାହିଁକି? କିମ୍ବା ଅପକର୍ମ କରୁଥିବା ବ୍ୟକ୍ତିମାନଙ୍କର ତିଳେ ମଧ୍ୟ ଠାକୁରଙ୍କ ପ୍ରତି ଭୟ ନାହିଁ କାହିଁକି?)

1. କିଛି ବିଶେଷବର୍ଗର ଭକ୍ତମାନଙ୍କୁ ବିଶେଷଧରଣର ପୂଜା କରାଇବା ବାହାନାରେ, ଏକ ନିର୍ଦ୍ଦିଷ୍ଟ କିମ୍ବା ଅନିର୍ଦ୍ଦିଷ୍ଟ ପରିମାଣର ଧନରାଶି ନେଇ ମନ୍ଦିରଭିତରେ ଆଗପଛି ଠାକୁରଙ୍କୁ ଅତିନିକଟରୁ ଦର୍ଶନ କରାଯାଇଥାଏ । ବାକି ସାଧାରଣଭକ୍ତ ଘଣ୍ଟା ଘଣ୍ଟା ଧରି ଲମ୍ବାଧାଡିରେ ଠିଆହୋଇ ଶେଷରେ ଠାକୁରଙ୍କୁ ଦୂରରୁ ହିଁ ଦର୍ଶନକରିବା ସୁଯୋଗ ପାଇଥାଏ । ଏହା କେତେଦୂର ନ୍ୟାୟସଙ୍ଗତ ବିଚାର କରନ୍ତୁ ? ଠାକୁରଙ୍କ ଦୃଷ୍ଟିରେ ଯଦି ସଭିଏଁ ସମାନ, ଏଇଠି ଦର୍ଶନପାଇଁ ଆଗ ପଛ କାହିଁକି ?

2. ମନ୍ଦିର ଆଗରେ ବିକ୍ରି ହେଉଥିବା ପୂଜା ସାମଗ୍ରୀଗୁଡିକ ସାଧାରଣ ବଜାରଠାରୁ ବେଶ ମହଙ୍ଗା ଦରରେ ବିକ୍ରି ହେଉଛି । କେତେକ ସ୍ଥାନରେ ଭକ୍ତଙ୍କଦ୍ୱାରା ଠାକୁରଙ୍କୁ ଅର୍ପଣ କରାଯାଇଥିବା ପୂଜାସମାନ ଗୁଡିକ ମନ୍ଦିରର କିଛି ପୂଜାରୀ ପୁଣି ପୂର୍ବୋକ୍ତ ଦୋକାନୀମାନଙ୍କୁ ବିକ୍ରିକରି ଦିଅନ୍ତି । ଅର୍ଥାତ ଗୋଟିଏ ପୂଜା ଫୁଲମାଳ ବାରମ୍ବାର ଏକାଧିକ ଭକ୍ତଙ୍କ ଦ୍ୱାରା ଠାକୁରଙ୍କୁ ଅର୍ପଣ କରାଯାଇଥାଏ । ଏବେ ଆମେ ଚିନ୍ତାକରିବା କଥା ଯେ ଠାକୁର କାହାକୁ ଆଶୀର୍ବାଦ ଦେବେ ? କାହାକୁ ବି ନୁହେଁ ନା ସଭିଙ୍କୁ ଦେବେ ?

3.ତୀର୍ଥସ୍ଥଳମାନଙ୍କରେ ହୋଟେଲ ଆଦିରେ ମହଙ୍ଗା ଦାମରେ ତୀର୍ଥଯାତ୍ରୀଙ୍କୁ ନିମ୍ନମାନର ଖାଦ୍ୟ ପଦାର୍ଥ ବିକ୍ରିକରି କେତେକ ହୋଟେଲ ମାଲିକମାନେ ଯଥେଷ୍ଟ ଲାଭାନ୍ୱିତ ହୋଇଥାନ୍ତି । କୌଣସି ତୀର୍ଥଯାତ୍ରୀ ଯଦି ଏହାର ପ୍ରତିବାଦ କରନ୍ତି, ତା'ହେଲେ ହୋଟେଲ ମାଲିକମାନେ ଏକଜୁଟ ହୋଇ ଯାତ୍ରୀଙ୍କୁ ଧମକାଇଥାନ୍ତି, ଏପରିକି ମାରଧର ବି କରିଥାନ୍ତି । ଏପରି ପରିସ୍ଥିତିରେ ମଧ୍ୟ କୌଣସି ପ୍ରଶାସନ ଅଭିଯୋଗ ଶୁଣି ଉଚିତ ପଦକ୍ଷେପ ନେଉ ନାହାନ୍ତି, ସେହି ସ୍ଥାନରେ ଅବସ୍ଥିତ ସର୍ବଜ୍ଞାନୀ ଠାକୁର ମଧ ଭକ୍ତଙ୍କୁ ସାହାଯ୍ୟ କରୁନାହାନ୍ତି ।

 

4. ତିରୁପତି, ଋଷିକେଶ, ହରିଦ୍ୱାର, ଇଲ୍ଲାହାବାଦ, ପୁରୀ, ନାସିକ ଆଦି ଅନେକ ତୀର୍ଥସ୍ଥଳମାନଙ୍କରେ ଯେଉଁଠି ବିଭିନ୍ନ ପର୍ବସମୟରେ ମେଳା ବା ଯାତ୍ରା ଅନୁଷ୍ଠିତ ହୁଏ, ସେଠାରେ ପିତୃଶ୍ରାଦ୍ଧ ପାଇଁ ଅନେକ ପ୍ରକାର ପୂଜା, ଯଜ୍ଞ, ମୁଣ୍ଡନସଂସ୍କାର ଆଦି କରାଇବାପାଇଁ ସେଠିକା ପଣ୍ଡା, ପୂଜାରୀ ଭକ୍ତମାନଙ୍କ ପଛରେ ଗୋଡାଇଥା'ନ୍ତି । ଯିଏ, ଯାହାକୁ, ଯେମିତି ପଟେଇପାରିବ ତା'ଠାରୁ ସେ ସେତିକି ଝଡ଼େଇ ପାରିବ । ଭକ୍ତମାନେ ଭାବନ୍ତି - "ଏଇମାନଙ୍କ ଦ୍ୱାରା ଖାଦ୍ୟ ପାର୍ସଲ ପଠାଇଲେ ସେମାନଙ୍କ ପୂର୍ବପୁରୁଷ ନିଶ୍ଚିତ ଭାବେ ସବୁ କିଛି ପ୍ରାପ୍ତ କରିବେ ।" କେବଳ ଆତ୍ମପ୍ରବଞ୍ଚନା ।

5.କେତେକ ତୀର୍ଥସ୍ଥଳର ଆଶ୍ରମମାନଙ୍କରେ ଧର୍ମଗୁରୁମାନଙ୍କ କିଛି ଶିଷ୍ୟା ମଧ୍ୟ ପୂଜା ଅର୍ଚ୍ଚନା ଓ ସେବା କରିବା ପାଇଁ ରହନ୍ତି । ଗୃହରୁ ବିତାଡିତ ହୋଇ କିମ୍ବା ସମାଜରୁ ଲାଂଛିତା ହୋଇ ଯେଉଁ ଅସହାୟା ସ୍ତ୍ରୀମାନେ ଆସି ଆଶ୍ରମମାନଙ୍କରେ ଶରଣ ନେଇଥାନ୍ତି, ସେମାନଙ୍କର କିଭଳି ଶାରୀରିକ ଶୋଷଣ ହେଉଛି ତାହା କହିବା ଆବଶ୍ୟକନାହିଁ । ପ୍ରତିଦିନ ଟିଭି ଚ୍ୟାନେଲ ଓ ବିଭିନ୍ନ ଗଣମାଧ୍ୟମରେ ସବିଶେଷ ଖବର ପ୍ରଚାର ହେଉଛି । ସେଠିକା ଠାକୁର ତଥାପି ନିର୍ବିକାର ।

ବେଳେ ବେଳେ ସେହି ଆଶ୍ରମର ଆମଦାନୀ ଓ ସମ୍ପତ୍ତି ଉପରେ ବାଦ-ବିବାଦ ସୃଷ୍ଟି ହୋଇଯାଉଛି । ଆଶ୍ରମର ଗାଦୀ ପାଇବା ପାଇଁ ମଠ ମହନ୍ତମାନଙ୍କ ଭିତରେ ଖଣ୍ଡଯୁଦ୍ଧ ଆରମ୍ଭ ହୋଇଯାଉଛି । ଜଣେ ଧର୍ମଗୁରୁ ଅନ୍ୟ ଜଣେ ଧର୍ମଗୁରୁଙ୍କୁ ହତ୍ୟା କରିବାକୁ ମଧ୍ୟ ପଛାଉନାହାନ୍ତି । ଏଭଳି ଘଟଣାର ଗୋଟିଏ ନୁହେଁ ଅନେକ ଥର ପରଦାଫାସ ହେଲାଣି । କେତେ ଜଣ ପ୍ରସିଦ୍ଧ ବାବା ଏଥିପାଇଁ ଜେଲ ଦଣ୍ଡ ମଧ୍ୟ ଭୋଗ କରୁଛନ୍ତି । ଦୁଃଖର ବିଷୟ ଯେ ଆମର ସରଳ ବିଶ୍ୱାସୀ ଓ ଧର୍ମଭୀରୁ ଜନତା ନିଜର ତର୍କ ବୁଦ୍ଧି ପ୍ରୟୋଗ ନକରି ଯୁକ୍ତି କରିଥାନ୍ତି - "ସମସ୍ତ ବାବା ଠକ ବା ଭଣ୍ଡ ନୁହନ୍ତି । ଯେଉଁମାନେ ଭଣ୍ଡ ସେମାନଙ୍କୁ ଭଗବାନ ନିଶ୍ଚୟ ଦଣ୍ଡ ଦେବେ ।"

6. ତୀର୍ଥସ୍ଥଳ ନାମରେ ପ୍ରାକୃତିକ ପର୍ଯ୍ୟଟନସ୍ଥଳଗୁଡିକୁ ନଷ୍ଟ କରି ଦିଆଯାଉଛି । ଗଛ ବୃକ୍ଷ ଜାଗାରେ କଂକ୍ରିଟ ଜଙ୍ଗଲ ବୃଦ୍ଧି ପାଉଛି । ସେହି ଜାଗାମାନଙ୍କରେ ଧର୍ମଶାଳା ଓ ହୋଟେଲ ତିଆରି ହେଉଛି । ତୀର୍ଥଯାତ୍ରୀମାନେ ତୀର୍ଥସ୍ଥଳ ଚାରିପଟେ ବ୍ୟବହୃତ ପଲିଥିନ, ଫାଷ୍ଟଫୁଡଥିବା ଖାଲିପ୍ୟାକେଟ ଓ ପ୍ଲାଷ୍ଟିକ ପାଣିବୋତଲ, ଥରମୋକୋଲ

ଗ୍ଲାସ ଓ ଅନ୍ୟାନ୍ୟ ଆବର୍ଜନା ଫିଙ୍ଗି ଦେଉଛନ୍ତି । ଯାହା ଫଳରେ ସେହି ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟ ନଷ୍ଟ ହୋଇଯାଉଛି । ଉଦାହରଣ ସ୍ୱରୂପ ଗଙ୍ଗାନଦୀ କୂଳରେ ଅବସ୍ଥିତ ଋଷିକେଶ ଅଞ୍ଚଳକୁ ଯିଏ ଗତ ପଚାଶ ବର୍ଷ ତଳେ ଯାଇ ଦେଖିଥିବ, ସେ ଆଜି ସେହି ଅଞ୍ଚଳକୁ ଗଲେ ବୁଝି ପାରିବ - ଯେଉଁଠି ଦିନେ ବୃକ୍ଷ ବହୁଳ ସବୁଜିମା ଓ ଶାନ୍ତ ପରିବେଶ ମନକୁ ଆହ୍ଲାଦିତ କରୁଥିଲା ଆଜି ସେସବୁ ନାହିଁ । ସବୁ ଆଡେ ଖାଲି ଘର ଓ ବଜାର ଭର୍ତ୍ତି ହୋଇଛି । ଚିରସ୍ରୋତା ଗଙ୍ଗାନଦୀର କୁଳୁକୁଳୁ ସଙ୍ଗୀତ ଓ ତା'ର ନୈସର୍ଗିକ ଶୋଭା ସତେ ଯେମିତି କେଉଁଠି ହଜିଯାଇଛି । ତୀର୍ଥଯାତ୍ରୀଙ୍କୁ ଠକିବା ପାଇଁ ସତେ ଯେମିତି ସେଠାରେ ଶହ ଶହ ଧୂର୍ତ୍ତ ଲୋକ ଛକି ବସିଛନ୍ତି ।

ପରିତାପର ବିଷୟ ହେଉଛି - ଅଶିକ୍ଷିତ ଅଜ୍ଞାନୀ ମଣିଷ କେବଳ ନୁହନ୍ତି, ବହୁ ଉଚ୍ଚଶିକ୍ଷିତ ତଥା ପ୍ରଗତିଶୀଳ ମଣିଷ ମଧ୍ୟ ଧର୍ମଭୀରୁ ଗୁଣ ଯୋଗୁ ସେହି ପ୍ରାକୃତିକ ସ୍ଥଳର ସୌନ୍ଦର୍ଯ୍ୟ ଉପଭୋଗ କରିବା ବଦଳରେ, ସେଠାରେ ନିର୍ମାଣ ହୋଇଥିବା ଦେବୀ ଦେବତାଙ୍କ ଦର୍ଶନ କରି ଦୈବୀକୃପା ପାଇବା ଆଶାରେ ନିଜର ବହୁ ମୂଲ୍ୟ ସମୟ, ଶକ୍ତି ଓ ଧନ ନଷ୍ଟ କରୁଛନ୍ତି । ଶେଷରେ ଆର୍ଥିକ କ୍ଷତି ସହିବା ସହିତ ଶାରୀରିକ ଓ ମାନସିକ ଅବସାଦ ନେଇ ଘରକୁ ଫେରିଥାନ୍ତି । ଯେତେ ପାପ କର୍ମ କରିଥାଅ, ତୀର୍ଥ ସ୍ଥଳକୁ ଯାଇ ସବୁ ପାପ ଧୋଇ ପୁଣ୍ୟ ଅର୍ଜନ କରିଥିବାର ଏକ ଭ୍ରମାତ୍ମକ ଆଶ୍ୱାସନା ହିଁ ସେମାନଙ୍କ ପାଇଁ ବଡ଼ କଥା । ସତେ ଯେମିତି ପୁଣି ଥରେ ନୂଆ ନୂଆ ପାପ କରିବାର ଲାଇସେନ୍ସ ରିନ୍ୟୁ କରି ଠାକୁର ତାଙ୍କୁ ଦେଇଦେଲେ । ଏହାଠୁ ଅଧିକ ଆଉ ସେମାନଙ୍କୁ କ'ଣ ଦରକାର ? ନିଜର କର୍ମସ୍ଥଳରେ କରିଥିବା ଦୁଷ୍କର୍ମ ପାଇଁ ସେମାନଙ୍କ ମନରେ ଜାଗ୍ରତ ହୋଇଥିବା ଅପରାଧବୋଧସବୁ, ତୀର୍ଥସ୍ଥଳକୁ ଯାଇ ଦେବଦର୍ଶନ କରି, ଦାନ ଦକ୍ଷିଣା ଦେଇଦେଲେ, ତାଙ୍କମନରୁ ଅପରାଧବୋଧ ମଧ୍ୟ ଦୂରେଇ ଯାଉଛି । ଅପରାଧ ପାଇଁ ପ୍ରାୟଶ୍ଚିତ ନାମରେ ପୂଜା, ଅର୍ଚ୍ଚନା କରି ଦାନ, ଦକ୍ଷିଣା ଦେଇ ଯଦି ଠାକୁରଙ୍କ ଦ୍ୱାରା ସମସ୍ତ ଅପକର୍ମର ଦୋଷକୁ କ୍ଷମାରେ ପରିଣତ କରିଦେଇହେବ ଏବଂ କାହାରିକୁ ଦଣ୍ଡ ମିଳିବ ନାହିଁ ତେବେ ସମାଜରେ ନୈତିକତା ଆସିବ କୁଆଡୁ ? ଏହା ମଣିଷମାନଙ୍କର ଆତ୍ମପ୍ରବଞ୍ଚନା ନୁହେଁକି ?

 

ଦୋଷୀକୁ ଦଣ୍ଡ ମିଳିଲେ ପୀଡିତକୁ ନ୍ୟାୟ ମିଳିବ ଅନ୍ୟମାନଙ୍କୁ ଦୋଷ ନକରିବା ପାଇଁ ଶିକ୍ଷା ମିଳିବ । ଏହା ହିଁ ସାରା ଦୁନିଆର ମଣିଷ ସମାଜର ପ୍ରଚଳିତ ସର୍ବମାନ୍ୟ ସାମାଜିକ ନ୍ୟାୟ ବ୍ୟବସ୍ଥା । ପ୍ରତ୍ୟେକ ଦେଶର ସମ୍ବିଧାନରେ ଦଣ୍ଡ ସଂହିତା ପ୍ରଣୟନ କରାଯାଇଛି । ଧାର୍ମିକ ଗୋଷ୍ଠୀ ଏହାକୁ ଉପେକ୍ଷା କରିବାର ଅର୍ଥ କଅଣ ?

ଗତ 2009 ସାଲ, ସେପ୍ଟେମ୍ବର 29 ତାରିଖରେ ସୁପ୍ରିମକୋର୍ଟର ମାନନୀୟ ନ୍ୟାୟାଧୀଶମାନଙ୍କ ଦ୍ୱାରା କେନ୍ଦ୍ର ଓ ରାଜ୍ୟ ସରକାରକୁ ଦିଆଯାଇଥିବା ଏକ ଆଦେଶରେ କୁହାଯାଇଛି - "ସଡକ, ଗଳିରାସ୍ତା ଏବଂ ସର୍ବସାଧାରଣଙ୍କ ବ୍ୟବହୃତ ସ୍ଥାନମାନଙ୍କରେ ମନ୍ଦିର, ମସଜିଦ, ଚର୍ଚ୍ଚ, ଗୁରୁଦ୍ୱାର ସହିତ ଅନ୍ୟ କୌଣସି ସମ୍ପ୍ରଦାୟର ପୂଜାସ୍ଥଳ ନିର୍ମାଣ ହୋଇପାରିବ ନାହିଁ ।" କାରଣ କେତେକ ସ୍ୱାର୍ଥନ୍ୱେଷୀ ଲୋକ ଖାଲି ପଡିଥିବା ସରକାରୀ ଓ ସର୍ବସାଧାରଣ ସ୍ଥାନମାନଙ୍କୁ କବଜା କରିବା ପାଇଁ ସେଠାରେ ପ୍ରଥମେ ଛୋଟ ଆକାରରେ ପୂଜାସ୍ଥଳଟିଏ ବନେଇ ଦେଉଛନ୍ତି । କିଛି ଦିନ ଭିତରେ ଲୋକମାନଙ୍କ ପୂଜା କରିବା ପାଇଁ ସଂଖ୍ୟା ବୃଦ୍ଧି ହେବା ପରେ ସେଠାରୁ ସେହି ପୂଜାସ୍ଥଳକୁ ହଟାଇବା ସମ୍ଭବ ହୋଇନଥାଏ । ଏହି କାରଣରୁ ଆଜି ଆମ ଦେଶରେ ଦେବୀ ଦେବତାଙ୍କ ଆଳରେ ହଜାର ହଜାର ଏକର ମୂଲ୍ୟବାନ ଭୂମି ତଥାକଥିତ ସ୍ୱୟଂଭୂ ଭଗବାନ, ବାବା, ସନ୍ଥ, ସାଧୁ ଜବରଦଖଲ କରି ରଖିଛନ୍ତି ତାହାର ହିସାବ ନାହିଁ । ସେହି ଜମିଗୁଡିକ କେବେ ଜନସଧାରଣଙ୍କ ହିତକାରୀ କାମରେ ଲାଗିପାରିବ ସେ ଆଶା ମଧ୍ୟ ନାହିଁ ।

*****<>*****

**ତୀର୍ଥସ୍ଥଳକୁ ଯାଇ ପୂଜା ଅର୍ଚ୍ଚନା କଲେ ଯଦି ସବୁ ପାପ ଧୋଇ ହୋଇଯିବ, ତେବେ ସମାଜରୁ ପାପ କର୍ମର ଅନ୍ତ ହେବ କିପରି ?**

# ଭୂତ ବା ପ୍ରେତ କେଉଁଠି ?

ଭୂତ ଓ ପ୍ରେତାତ୍ମାର ଅସ୍ତିତ୍ୱ କେବଳ ଭାରତରେ ନୁହେଁ, ପ୍ରାୟ ସାରା ଦୁନିଆର ଲୋକମାନେ ବିଶ୍ୱାସ କରୁଛନ୍ତି । ବୁଦ୍ଧିଜୀବୀ ହେତୁବାଦୀ ଓ ବୈଜ୍ଞାନିକମାନେ ତର୍କ ସଙ୍ଗତ ତଥ୍ୟ ସହିତ ଭୂତ, ପ୍ରେତ ଆଦିର ଅସ୍ତିତ୍ୱକୁ ଅସ୍ୱୀକାର କରୁଥିବା ବେଳେ ଦୁର୍ବଳମନା ବ୍ୟକ୍ତିମାନେ କୁହନ୍ତି - "ଭୂତ ଭଳି କିଛି ତ ଅଛି " ଏହି ସମ୍ଭାବନାତ୍ମକ କିଛି ଥିବାର ପ୍ରମାଣ ଦେବା ପାଇଁ ଗଣମାଧ୍ୟମରେ ପ୍ରକାଶ ପାଉଥିବା କିଛି ଘଟଣାର (ସତ୍ୟ ଘଟଣା ବୋଲି କହି) ଉଦାହରଣ ଦେଇଥାନ୍ତି । ଆଉ କେତେକ ଲୋକ ନିଜର କିମ୍ବା ଅନ୍ୟମାନଙ୍କର ବ୍ୟକ୍ତିଗତ ଅନୁଭବ ଘଟଣାକୁ ବର୍ଣ୍ଣନା କରି ଶ୍ରୋତାଙ୍କ ମନରେ ଭୂତ, ପ୍ରେତ ପ୍ରତି ଥିବା ଭୟାକୁ ବିଶ୍ୱାସକୁ ଆହୁରି ବେଶୀ ଦୃଢ଼ୀଭୂତ କରି ଦେଇଥାନ୍ତି ।

ଭୂତ ଓ ପ୍ରେତର ସ୍ୱରୂପ ସମ୍ପର୍କରେ ଲୋକମାନଙ୍କର ଭିନ୍ନ ଭିନ୍ନ ମତ ପ୍ରକାଶ ପାଇଥାଏ । କିଏ କହେ ଭୂତ କଳାଛାଇ ଭଳି ଦିଶେ, କିଏ କହେ ଧଳାଛାଇ ଭଳି ଦିଶେ । କିଏ କହେ ତା'ର ତେରେଛା ଦାନ୍ତ, ବଡ଼ ବଡ଼ ଆଖି ଲମ୍ବା ବାଳ ଓ ଖୁବ ଲମ୍ବା ମଣିଷ ଭଳି ଦିଶେ । କିଏ କହେ ଶ୍ମଶାନରେ ଭୂତମାନେ ଲଙ୍ଗଳା ହୋଇ ନାଚନ୍ତି । କିଏ କହେ ସେମାନେ ଅବୋଧ ଭାଷାରେ ଗୁଣୁ ଗୁଣୁ ହୋଇ ନାକରେ କଥା କହନ୍ତି । ବିଦେଶର ଲୋକମାନେ ବିଶ୍ୱାସ କରନ୍ତି - ଭୂତମାନେ ପରିତ୍ୟକ୍ତ କୋଠା, ଫାସି ଦିଆଯାଇଥିବାସ୍ଥାନ, ଶ୍ମଶାନ ଆଦିରେ ବାସ କରନ୍ତି । ଭାରତୀୟମାନେ ମଧ୍ୟ ସେହିଭଳି ସ୍ଥାନ ସହିତ, ବଡ ବଡ଼ ଗଛମାନଙ୍କରେ ଭୂତ ରହନ୍ତି ବୋଲି ବିଶ୍ୱାସ କରନ୍ତି । ଆଜିକାଲି ସତ୍ୟକଥା ନାମରେ ପ୍ରକାଶ ପାଉଥିବା ଶସ୍ତା ଓ ଅବୈଜ୍ଞାନିକ ପତ୍ରିକାରେ ସେହିଭଳି କପୋଳକଳ୍ପିତ ଅବାନ୍ତର କାହାଣୀ ପ୍ରକାଶ ପାଇଥାଏ । ଟିଭିରେ ମଧ୍ୟ ସେହିଭଳି କିମ୍ଭୂତକିମାକାର ବିକୃତ ଦୃଶ୍ୟ ସବୁ ପ୍ରସାର ହୁଏ । ଲୋକମାନେ ସେସବୁ ପଢି ଓ ଦେଖି ସତ୍ୟ ବୋଲି ବିଶ୍ୱାସ କରନ୍ତି ।

ସାଧାରଣତଃ ମୃତ ମଣିଷର ଅତୃପ୍ତ ଆତ୍ମା ହିଁ ଭୂତ, ପ୍ରେତ, ଓ ଡାହାଣୀ ରୂପେ ଅଦୃଶ୍ୟ ଭାବେ ଶୂନ୍ୟରେ ବିଚରଣ କରୁଥାଏ ବୋଲି ସମସ୍ତେ ବିଶ୍ୱାସ

କରୁଛନ୍ତି । ଦୁର୍ଘଟଣା, ସର୍ପଦଂଶନ, ହତ୍ୟା, ଆତ୍ମହତ୍ୟା, ଏବଂ ଯେ କୌଣସି କାରଣରୁ ଅକାଳ ମୃତ୍ୟୁ ବରଣ କରିଥିବା ବ୍ୟକ୍ତିର ଆତ୍ମା ଅତୃପ୍ତ ରହିଥାଏ ବୋଲି କୁହନ୍ତି । ସେମାନଙ୍କର ଜୀବିତ କାଳରେ ଥିବା ଭୋଗ ଲାଳସା ପୂରଣ ହୋଇ ନଥିବାରୁ ଏବଂ ସେମାନଙ୍କ ନିଜ ଶରୀର ନଷ୍ଟ ହୋଇଯାଇ ଥିବାରୁ ଅନ୍ୟର ଶରୀରରେ ପଶି ସେହି ଲାଳସାକୁ ଭୋଗ କରିବାକୁ ଚାହୁଁଛନ୍ତି । ଉପରୋକ୍ତ ତର୍କରେ କୌଣସି ତଥ୍ୟ ନଥାଏ ।  କେବଳ କହାଶୁଣା କଥା ଉପରେ ପର୍ଯ୍ୟବସିତ ଏକ ଅହେତୁକ ବିଶ୍ୱାସ ମାତ୍ର ।

ଭୂତ ଓ ପ୍ରେତମାନଙ୍କୁ ଶାନ୍ତ କରି ନିଜ ଇଚ୍ଛା ଅନୁସାରେ ବ୍ୟବହାର କରିବା ଆଶାରେ କିଛି ଲୋକ ମନ୍ତ୍ର ପାଠକରି, ଯନ୍ତ୍ର ତନ୍ତ୍ର ପ୍ରୟୋଗ କରି ସିଦ୍ଧି ପ୍ରାପ୍ତ କରିବା ପାଇଁ କୃଚ୍ଛ୍ର ସାଧନା କରିଥାନ୍ତି । ଏହି ପ୍ରକ୍ରିୟା ନିହାତି ଅବୈଜ୍ଞାନିକ ହେଲେ ମଧ୍ୟ ତାନ୍ତ୍ରିକ ହେବା ପାଇଁ କିଛି ଲୋକ ଅନେକପ୍ରକାର ଅମାନବୀୟ କର୍ମ କରିଥାନ୍ତି । ସେହି କର୍ମକାଣ୍ଡ ଭିତରେ ପଶୁବଳୀ ଓ ନରବଳୀ ମଧ୍ୟ ସାମିଲ ଥାଏ । ଏଭଳି କର୍ମ କରି ସେମାନଙ୍କୁ ସିଦ୍ଧି ବା ଶକ୍ତି ତ ମିଳେନାହିଁ ବରଂ ଲୋକ ନିନ୍ଦା, ମାଡ଼ ଓ ଜେଲଦଣ୍ଡ ନିଶ୍ଚୟ ମିଳିଥାଏ ।

ଏଇଠି ପ୍ରଶ୍ନ ଉଠୁଛି ଯେ ଆତ୍ମା ଯଦି ଏତେ ଶକ୍ତିଶାଳୀ, ସେ ସ୍ୱୟଂ ଦେହ ଧାରଣ କରୁନାହିଁ କାହିଁକି ? ନିଜର ଇଚ୍ଛା ପୂରଣ ପାଇଁ କୌଣସି ମଣିଷର ଦେହକୁ ବ୍ୟବହାର କରୁଛି କାହିଁକି ? ଏଥିରୁ ପ୍ରମାଣିତ ହେଉଛି ଯେ ଆତ୍ମାର କୌଣସି ଶକ୍ତି ନାହିଁ । ତେଣୁ ସେ ଅନ୍ୟର କୌଣସି କ୍ଷତି କରିବାର ପ୍ରଶ୍ନ ଉଠୁନି ।

ଅସଲ କଥା ହେଉଛି - ସମାଜର କିଛି ଧୂର୍ତ୍ତଲୋକ ନିଜ ସ୍ୱାର୍ଥ ସାଧନ ପାଇଁ ସରଳ ବିଶ୍ୱାସୀ ଲୋକଙ୍କ  ଭୟ ଓ ଦୁର୍ବଳତାକୁ ପୁଞ୍ଜି କରି ଶୋଷଣ କରିବାକୁ ଭୂତ, ପ୍ରେତ, ଡାହାଣୀ ଆଦିର ଅସ୍ତିତ୍ୱକୁ ବଞ୍ଚାଇ ରଖିଛନ୍ତି । ବିଶେଷ କରି ପଣ୍ଡା ପୁରୋହିତମାନେ ଅତୃପ୍ତ ଆତ୍ମାର ମୋକ୍ଷ କରାଇବା ନାମରେ ଧନ ଲୁଟିବାର ଏକ ସୁଚିନ୍ତିତ ରାସ୍ତା ଖୋଲି ରଖିଛନ୍ତି । ଗରୁଡ ପୁରାଣରେ ଲେଖାଥିବା ନର୍କର ବର୍ଣ୍ଣନା ପଢ଼ିଲେ, ଜଣେ ବୁଝି ପାରିବ ସେଥିରେ କେତେ ଅବାନ୍ତର କଥା ଲେଖା ଯାଇଛି ? କେହି ମଧ୍ୟ ତର୍କ କରି ଜାଣିବାକୁ ଚାହୁଁ ନାହାନ୍ତି ଯେ ମୃତ୍ୟୁ ପରେ ତ ଶରୀର ଏହି

 

ମର୍ତ୍ତ୍ୟରେ ହିଁ ନଷ୍ଟ ହୋଇଯାଉଛି, ଯମ ଦୂତମାନେ କେଉଁ ଶରୀରକୁ ନେଇ ଗରମ ତେଲ କଡେଇରେ ପକୋଡା ଛାଣିଲା ଭଳି ଭାଜୁଛନ୍ତି ? ନର୍କରେ କ'ଣ ମର୍ତ୍ତ୍ୟ ଭଳି ନିଆଁ, ତେଲ, ଲୁହାକଡ଼େଇ ଓ ଚଟୁ ଇତ୍ୟାଦି ଅଛି ? ବିନା ଶରୀରର ପିତୃପୁରୁଷମାନେ ପିତୃଶ୍ରାଦ୍ଧରେ ଦିଆଯାଉଥିବା ଖାଦ୍ୟକୁ କିପରି ଖାଇପାରିବେ ? ବଞ୍ଚିଥିବା ବେଳେ ଯେଉଁ ମଣିଷ ଦିନକୁ ତିନି ଚାରି ଥର ଭୋଜନ କରୁଥିଲା, ସେ ନର୍କରେ ବର୍ଷକୁ କେବଳ ଥରେ ଖାଇ କିପରି ରହିପାରୁଛି ? ମୃତ ପିତୃପୁରୁଷଙ୍କ ପାଇଁ ନର୍କରେ ଯଦି ଖାଇବା ବ୍ୟବସ୍ଥା ନାହିଁ, ତେବେ ଯମ ଓ ଯମଦୂତମାନେ କଅଣ ଖାଆନ୍ତି ? ଏସବୁ ପ୍ରଶ୍ନ ଉତ୍ତର କାହାରି ପାଖରେ ନାହିଁ ।

ପୁରୋହିତ କହନ୍ତି – "ତୁମେ ଯଦି ତୁମ ବାପା ଓ ମା'ଙ୍କୁ ଭକ୍ତି କରୁଛ ତେବେ କୌଣସି ପ୍ରଶ୍ନ କରନାହିଁ । ମୁଁ ଯାହା କହୁଛି ତାହା ହିଁ କର । ପିଣ୍ଡ ଦାନ ନକଲେ ତୁମକୁ ପ୍ରେତବାଧା ଲାଗିବ ।"

ସେମାନେ ଯେଉଁ ଆତ୍ମା କଥା କହୁଛନ୍ତି, ସେମାନେ ହୁଏତ ଜାଣିନାହାନ୍ତି ଯେ ଆମର ଗୀତା ବଚନ ଅନୁସାରେ ଆତ୍ମା ଅଜର, ଅମର, ତା'ର ଜନ୍ମ ବା ମୃତ୍ୟୁ ନାହିଁ । ସେ ନିର୍ଲିପ୍ତ । ତେଣୁ ସେ ଅତୃପ୍ତ ହେବାର ପ୍ରଶ୍ନ ଉଠୁନି । ସେହି ଗୀତା ଅନୁସାରେ, ଆତ୍ମା ଯଦି ପୁରୁଣା ଶରୀର ତ୍ୟାଗ କରି ନୂତନ ଶରୀରରେ ପ୍ରବେଶ କରିଯାଉଛି, ତା'ହେଲେ କେଉଁ ଆତ୍ମା ଶୂନ୍ୟରେ ବିଚରଣ କରୁଛି ? କେଉଁ ଆତ୍ମା ଭୂତ ବା ପ୍ରେତ ହୋଇ ରହୁଛି ?

*****<>*****

## ଭୂତମାନଙ୍କୁ ବିଶ୍ୱାସ କରୁଥିବା ଲୋକମାନଙ୍କୁ ହିଁ ଭୂତ ଦେଖାଯାଏ । ବିଶ୍ୱାସ କରୁନଥିବା ଲୋକମାନଙ୍କ ଠାରୁ ଭୂତ ଦୂରରେ ରହେ ।

 

# ଅହେତୁକ ବିଶ୍ୱାସର ହେତୁ

ହେତୁ ଅର୍ଥ କାରଣ । ଯେଉଁମାନେ କାରଣ ନଜାଣି କୌଣସି କଥାରେ ସହଜରେ ବିଶ୍ୱାସ କରିଥାନ୍ତି, ସେମାନେ ଭବିଷ୍ୟତରେ ଧୋକା ଖାଇବା ବା ଠକିହେବାର ସମ୍ଭାବନା ଅଧିକ ଥାଏ । ଭୌତିକ ଜଗତର ଯେ କୌଣସି କାର୍ଯ୍ୟ କରିବା ପୂର୍ବରୁ ଅଳ୍ପ ବା ବହୁତ ଜ୍ଞାନ ହାସଲ ନ କରି ଏବଂ କାର୍ଯ୍ୟର କାରଣ ନଜାଣି କେହି ବି କାମ ଆରମ୍ଭ କରନ୍ତିନାହିଁ । କିନ୍ତୁ ବିଡମ୍ବନା ହେଉଛି ଯେ ଆଧ୍ୟାତ୍ମିକ କର୍ମକାଣ୍ଡ କରିବା ପାଇଁ କୌଣସି ଜ୍ଞାନ ଦରକାର ନାହିଁ ଏବଂ କାରଣ ଜାଣିବା ମଧ୍ୟ ଆବଶ୍ୟକ ମନେ କରନ୍ତିନାହିଁ । ପଣ୍ଡା, ପୁରୋହିତ ବା ସାଧୁ-ସନ୍ୟାସୀ ଯାହା କହିବେ, ସେହି ଅନୁସାରେ ବସା-ଉଠା ହୋଇ, ଭୂଇଁରେ ସାଷ୍ଟାଙ୍ଗ ପ୍ରଣିପାତ କରି, ଦାନ-ଦକ୍ଷିଣା ଦେଇ ମୂର୍ଖଙ୍କ ଭଳି ସବୁକାମ କରିବେ ।

ଭାରତୀୟ ମଣିଷମାନଙ୍କର ମନରୁ ଅହେତୁକ ବିଶ୍ୱାସ ଦୂର କରିବା ପାଇଁ ସର୍ବ ପ୍ରଥମେ ଆମେ ତଥାକଥିତ ଧର୍ମଗୁରୁ, ସାଧୁ, ସନ୍ୟାସୀ, ପଣ୍ଡା, ପୂଜାରୀ, ତାନ୍ତ୍ରିକ, ଜ୍ୟୋତିଷମାନଙ୍କର ଅସଲ ରହସ୍ୟ ଜାଣିବାକୁ ହେବ । ସେମାନେ ଦାବି କରୁଥିବା ଚମତ୍କାରୀ ଶକ୍ତିକୁ ନିଜର ତର୍କବୁଦ୍ଧି ଦ୍ୱାରା ପରୀକ୍ଷାକରି ଜାଣିବା ଦରକାର । ପ୍ରଶ୍ନ ଉଠୁଛି - ସେମାନଙ୍କର ଏହିସବୁ ଦାବି ଯେ କେତେ ମିଛ ତାହା ପ୍ରମାଣିତ କରିବାକୁ କିଏ ଆଗକୁ ଆସିବ ?

ଅଧିକାଂଶ ଲୋକ ତ ସେହି ଭଣ୍ଡବାବାଙ୍କର ସମର୍ଥକ । ତେଣୁ କେହି ତାଙ୍କ ବିଷୟରେ ଅସଲ କଥା କହିଲେ ବି କେହି ସହଜରେ ବିଶ୍ୱାସ କରୁନାହାନ୍ତି ଏବଂ ବିରୋଧ କରିବାର ପ୍ରଶ୍ନ ଉଠୁନାହିଁ । ଏମିତିରେ ବି ହେତୁବାଦୀଙ୍କ ସଂଖ୍ୟା ସମାଜରେ ବହୁତ କମ । ହେତୁବାଦ ଉପରେ ଚର୍ଚ୍ଚା କରୁଥିବା ବ୍ୟକ୍ତିକୁ ସମାଜ "ନାସ୍ତିକ" କହି ନିନ୍ଦାକରିଥାଏ । ଅତୀତରେ ବିଦେଶର ବହୁତ ବୁଦ୍ଧିଜୀବୀ ବୈଜ୍ଞାନିକ ବ୍ରୁନୋ, ଗ୍ୟାଲିଲିଓ, କୋପରନିକସ ଆଦି ସତକଥା କହି ସେତେବେଳେର କଟ୍ଟର ଧର୍ମଗୁରୁମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇଛନ୍ତି ଏବଂ ଜୀବନ ହରାଇଛନ୍ତି । ଆଜିର ଯୁଗରେ ମଧ୍ୟ ଆମଦେଶର ଅନେକ ବୁଦ୍ଧିଜୀବୀ, ମହାରାଷ୍ଟ୍ରର ଡ଼.ଦାବୋଲକର,

 

କର୍ଣ୍ଣାଟକର ଡ଼.ପାନସାରେ, ଡ଼.କୁଲବର୍ଗୀ ଓ ସାମ୍ବାଦିକା ଗୌରୀ ଲଙ୍କେଶ ଆଦି ସମାଜରେ ବ୍ୟାପ୍ତ କୁସଂସ୍କାର ଦୂର କରିବା ପାଇଁ ଚେଷ୍ଟା କରୁଥିବାରୁ ଜୀବନ ହରାଇବାକୁ ପଡ଼ିଲାଣି ।

ଆଜି ସମୟ ବଦଳିଛି ତେଣୁ ଆମର ଶିକ୍ଷିତ ଯୁବବର୍ଗ ନିଜର ବୈଜ୍ଞାନିକଚିନ୍ତନ ସାହାଯ୍ୟରେ ତର୍କ ପ୍ରସ୍ତୁତକରି ନିଜର ତଥା ପରିବାରର ଅନ୍ୟ ସଦସ୍ୟମାନଙ୍କର ମନରୁ ଅହେତୁକ ବିଶ୍ୱାସଗୁଡିକୁ ଦୂର କରିବାପାଇଁ ପ୍ରୟାସ କରିବା ଉଚିତ ।

ଆମର ପୂର୍ବ ପୁରୁଷଙ୍କ ଅମଳରେ ଅନେକ ପ୍ରକାର ଭ୍ରାନ୍ତି ପ୍ରଚଳିତଥିଲା । ଯଥା : ଜଣେ କାହାକୁ କିଛି ମନ୍ତ୍ର ସିଦ୍ଧ ଜିନିଷ ଖୁଆଇ ଦେଲେ, ସେ ତା'ର ସବୁକଥା ମାନିବାକୁ ବାଧ ହେବ । ଗୋଟିଏ ଗୁଣିଆ ମନ୍ତୁରା ପାଉଁଶ ଫିଙ୍ଗି ଦେଲେ ଅମୁକ ଲୋକ ବୀମାର ପଡିଯିବ । କାହାର କୁଦୃଷ୍ଟି ପଡିଯିବାରୁ ଅମୁକ ପିଲାଟି ଅସ୍ୱସ୍ଥ ରହୁଛି । ମନ୍ତ୍ର-ଯନ୍ତ୍ର କରି ଦୁଧିଆଳୀ ଗାଈର କ୍ଷୀର ଦେବା ବନ୍ଦ କରି ହେବ । ରାତିରେ ଘର ଚାଳ ଉପରେ ବସି ପେଚା ରାବିଲେ ସେ ଘରେ ବିପତ୍ତି ପଡିବ । କୌଣସି କାମରେ ବାହାରକୁ ଯାଉଥିବା ବେଳେ ବିଧବା ସ୍ତ୍ରୀ, ନଣ୍ଡା ମୁଣ୍ଡିଆ ମଣିଷ, କିଛି ଶୁଦ୍ର ଜାତିର ଲୋକ, ମୁଣ୍ଡଉପରେ ତେଲହାଣ୍ଡି ଧରି ବିକ୍ରି କରିବାକୁ ଯାଉଥିବା ମଣିଷ, ଖାଲି ମାଠିଆ ଇତ୍ୟାଦି ଦର୍ଶନ କଲେ କାମରେ ସଫଳତା ମିଳିବ ନାହିଁ ଭଳି ଅନେକ ଅହେତୁକ ବିଶ୍ୱାସ ଥିଲା । ଘରେ ରହୁଥିବା ଝିଟିପିଟି ମଣିଷ ଦେହଉପରେ ପଡିଗଲେ ବିଭିନ୍ନ ଅଙ୍ଗ ଅନୁସାରେ ଶୁଭଅଶୁଭ ଘଟେ ବୋଲିକୁହନ୍ତି ।

ଗାଁ ଗହଳରେ ଆଉ ଗୋଟିଏ ଅହେତୁକ ବିଶ୍ୱାସ ରହିଛି - ବିଭିନ୍ନ ପୂଜା ପାର୍ବଣ ସମୟରେ ଘରେ ଘରେ ବିଭିନ୍ନ ପ୍ରକାର ପିଠା ତିଆରି ହୁଏ । ପିଠା ପାଇଁ ଆବଶ୍ୟକ ଚାଉଳ ଚୁନା, ଗୁଡ଼ ଇତ୍ୟାଦି ମିଶାଇ ପାଗ କରାଯାଏ । ସେହି ସମୟରେ ଘର ବାହାରର କୌଣସି ସ୍ତ୍ରୀ ଲୋକର ଦୃଷ୍ଟି ପଡିବା ଉଚିତ ନାହିଁ । ଏପରିକି ନିଜ ଘରର ସେସମୟରେ ରଜସ୍ୱଳା ହୋଇଥିବା ସ୍ତ୍ରୀଙ୍କୁ ପିଠା ତିଆରି କରିବାକୁ ମନା କରାଯାଏ, ରୋଷେଇ କରିବାକୁ ମଧ ମନା କରାଯାଏ । ସେହି ସମୟରେ ସ୍ତ୍ରୀ ଦୁର୍ବଳ ଓ ଅପରିଷ୍କାର ଥାଏ ବୋଲି ଯୁକ୍ତି କରାଯାଏ । ଅବଶ୍ୟ ପୁରୁଣା କାଳରେ ସେ

ସମୟରେ କିପରି ପରିଷ୍କାର ରହିହେବ ସେପରି ଜ୍ଞାନ ନଥିଲା କିନ୍ତୁ ଆଜି ଶିକ୍ଷିତା ସ୍ତ୍ରୀମାନେ ବହୁତ ଭଲଭାବେ ନିଜ ସ୍ୱାସ୍ଥ୍ୟର ଯତ୍ନ ନେବା ଜାଣିଛନ୍ତି । ଆଜି ସେମାନେ ସେହି ଦିନମାନଙ୍କରେ ସବୁ ପ୍ରକାର କାମ କରିପାରୁଛନ୍ତି । ଚାକିରି କରୁଥିବା ସ୍ତ୍ରୀମାନଙ୍କୁ ପ୍ରତିମାସରେ ଚାରି ପାଞ୍ଚ ଦିନ ଘରେ ରହିବାକୁ ଛୁଟି କିଏ ଦେବ ? ଆଜିର ଛୋଟ ପରିବାର ଭିତରେ ସ୍ତ୍ରୀ ଯଦି ରୋଷେଇ ନକରିବ, ଚାକିରି କିମ୍ବା ବ୍ୟବସାୟ କରୁଥିବା ତା'ସ୍ୱାମୀ ଓ ସ୍କୁଲକୁ ଯାଉଥିବା ପିଲାମାନେ କ'ଣ ଖାଇବେ ? ପ୍ରକୃତ କଥା ହେଉଛି ଯେ ରଜସ୍ୱଳା ହେବା ନାରୀର ଏକ ପ୍ରାକୃତିକ ପ୍ରକ୍ରିୟା । ଏଥିରେ ଦୋଷ ବାଛିବା ହିଁ ଏକ ମହାନ ଦୋଷ । ରଜସ୍ୱଳା ନହେଲେ ନାରୀ ବନ୍ଧ୍ୟା ଦୋଷରେ ନିନ୍ଦିତ ହୋଇଥାଏ । ସେ ମାତୃତ୍ୱର ଗୌରବ ମଧ୍ୟ ପାଇବନାହିଁ । ତେଣୁ ସେମାନେ ପିଠା କରି ପାରିବେନି କାହିଁକି ? ଯଦି ସେ ଦିନ ଭଲପିଠା ନ ହୁଏ ତେବେ ସିଧା ଦୋଷ ହେବ ଯିଏ ସେଦିନ ତାଙ୍କ ଘରକୁ ଆସିଥିଲା କିମ୍ବା ରଜସ୍ୱଳା ହୋଇଥିବା ସ୍ତ୍ରୀଲୋକ ଛୁଇଁ ଦେଇଛି । ଏହିଭଳି ବିଶ୍ୱାସର କୌଣସି ବୈଜ୍ଞାନିକ ଆଧାର ନାହିଁ ।

ଅସଲ କଥା ହେଉଛି - ପିଠା ତିଆରି ପାଇଁ ବ୍ୟବହୃତ ବସ୍ତୁ ଗୁଡିକର ଗୁଣବତ୍ତା, ଭାଗମାପ ଓ ପିଠା ତିଆରି କରୁଥିବା ସ୍ତ୍ରୀଙ୍କର ଜ୍ଞାନ କୌଶଳ ଓ ଅନୁଭବ ଠିକ ନଥିଲେ ଭଲ ପିଠା ହୋଇ ପାରିବନାହିଁ । ସବୁ ଜିନିଷ ଓ କୁଶଳୀ ହାତ ଯଦି ଠିକ ଥିବ ତା'ହେଲେ ହଜାର ହଜାର ଲୋକମାନଙ୍କ ଆଗରେ ମଧ୍ୟ ସୁସ୍ୱାଦୁ ପିଠା ତିଆରି ହୋଇପାରିବ, ଏଥିରେ ସନ୍ଦେହ ନାହିଁ ।

ଅହେତୁକ ବିଶ୍ୱାସ ବୃଦ୍ଧି କରୁଥିବା ଅନେକ କାରଣ ଭିତରୁ ଗୋଟିଏ ବିଶେଷ କାରଣ ହେଉଛି - ଟିଭିରେ ପ୍ରସାରିତ ହେଉଥିବା ଅନେକ ଅବୈଜ୍ଞାନିକ ଓ ଅବିଶ୍ୱାସନୀୟ ପ୍ରସଙ୍ଗ ଉପରେ ତିଆରି କାର୍ଯ୍ୟକ୍ରମ । ଘରକରଣା କାମକୁ ଅବହେଳା କରି କିମ୍ବା ଚାକରାଣୀକୁ ସେ ଦାୟିତ୍ୱ ଦେଇ ନିଜେ ଟିଭି ସିରିୟଲ ଦେଖୁଥିବା ସ୍ତ୍ରୀମାନେ ବେଶୀ ଏହାଦ୍ୱାରା ପ୍ରଭାବିତ ହେଉଛନ୍ତି । ଅଧିକାଂଶ ସିରିଆଲରେ ଶାଶୁ ବୋହୂଙ୍କ ଝଗଡା, ଭୂତ ପ୍ରେତ ମୂଳକ କାଳ୍ପନିକ (ସତ କଥା ବୋଲି କହି) ଦୃଶ୍ୟ, ସାଧୁ ସନ୍ନ୍ୟାସୀମାନଙ୍କ 'ବ୍ରହ୍ମ ହିଁ ସତ୍ୟ, ଜଗତ ମାୟା' ରୂପକ ପ୍ରବଚନ, କେଉଁଠି

 

ସମୁଦ୍ର ପାଣି ମିଠା ଲାଗିବା ଖବର, କେଉଁଠି ନିମ ଗଛରୁ କ୍ଷୀର ବାହାରୁଥିବା ଦୃଶ୍ୟ, ଗଣେଶ କ୍ଷୀର ପିଉଥିବା ଗୁଜବ ପ୍ରଚାର ହେଉଥାଏ ।

ଦର୍ଶକମାନେ ସେହିସବୁ ଦୃଶ୍ୟ ଦେଖି ମାନସିକ ସ୍ତରରେ କାହାଣୀର ଚରିତ୍ର ସହିତ ବାନ୍ଧି ହୋଇ ଯା'ନ୍ତି । ସେମାନେ ପିଲାଦିନେ ଶୁଣିଥିବା ଭୂତପ୍ରେତ କିମ୍ବା ଚମତ୍କାରୀ କାହାଣୀ ଗୁଡ଼ିକୁ ପ୍ରାୟ ଭୁଲି ଯାଉଥା'ନ୍ତି । ଅନେକ ଲୋକ ପୂର୍ବରୁ ଶୁଣିଥିବା ଘଟଣାକୁ ଅବିଶ୍ୱାସ କରୁଥିଲେ ମଧ୍ୟ ଟିଭି ପରଦାରେ ସେହି ଭଳି ଦୃଶ୍ୟ ଦେଖି ପୁଣି ଥରେ ମନେ ପକାଇବାକୁ ବାଧ୍ୟ ହୋଇଥାନ୍ତି ।

ବିଭିନ୍ନ ସାଂସାରିକ ସମସ୍ୟାରେ ଘେରି ରହିଥିବା ମଣିଷମାନେ ଟିଭିରେ ପ୍ରବଚନ ଦେଉଥିବା ତଥାକଥିତ ଜ୍ୟୋତିଷ ଓ ସାଧୁବାବାଙ୍କ ପାଖକୁ ଦୌଡ଼ିଯାଆନ୍ତି । ସେମାନେ ଦୈବୀଶକ୍ତି ବଳରେ ଚମତ୍କାର କରିଦେବେ ବୋଲି ବିଶ୍ୱାସ କରନ୍ତି । ଧନବୃଦ୍ଧି, ସମ୍ମାନବୃଦ୍ଧି, ଚାକିରିରେ ପ୍ରମୋସନ, ପରୀକ୍ଷାରେ ପାଶ ହେବା ଆଶାରେ ଅନେକ ପ୍ରକାର ଅବୈଜ୍ଞାନିକ ଉପାୟମାନ ଅବଲମ୍ବନ କରିଥାନ୍ତି । ତାନ୍ତ୍ରିକ ଓ ଜ୍ୟୋତିଷମାନଙ୍କ କଥାମାନି ଆଙ୍ଗୁଠିରେ ପିନ୍ଧିବାକୁ ମହଙ୍ଗା ପଥରବସା ମୁଦି, ଦେହରେ ପିନ୍ଧିବାକୁ ତାବିଜ ବା ଡେଉଁରିଆ, ଘରେ ରଖିବା ପାଇଁ ବିଭିନ୍ନ ପ୍ରକାରର ଯନ୍ତ୍ର, ଲାଫିଙ୍ଗ ବୁଦ୍ଧା, ବେଙ୍ଗ ବା କଇଁଛ ମୂର୍ତ୍ତି କିଣି ଆଣନ୍ତି । ବ୍ୟକ୍ତିଗତ ଭାବେ ସେମାନେ କିଏ କେତେ ଲାଭବାନ ହୁଅନ୍ତି, ସେକଥା ସେହିମାନେ ହିଁ କହି ପାରିବେ କିନ୍ତୁ ରତ୍ନନାମକ ପଥରବସା ମୁଦି, ତାବିଜ ଓ ମନ୍ତ୍ରସିଦ୍ଧ ଯନ୍ତ୍ର ସବୁ ବିକ୍ରି କରୁଥିବା ସଂସ୍ଥାମାନେ ଖୁବ ଶୀଘ୍ର କୋଟିପତି ହୋଇଯାଉଛନ୍ତି । ମଜା କଥା ହେଉଛି - 'ଚୋର ମା' ଦୁଆର କିଳି କାନ୍ଦିଲା ଭଳି ମହଙ୍ଗା ଦାମରେ କିଣିଥିବା ମୁଦିଟି ପିନ୍ଧିବା ପରେ ମଧ୍ୟ ଯଦି ମନୋବାଞ୍ଛା ପୂରଣ ନହେଲା ତେବେ ବି ସେ କାହାରିକୁ ସେହି ମୁଦିର ଚମତ୍କାରୀ ଶକ୍ତି ନଥିବା କଥା କହିବନାହିଁ କିମ୍ବା ତା'କୁ ଠକିଥିବା ଜ୍ୟୋତିଷ ବା ତାନ୍ତ୍ରିକକୁ ମଧ୍ୟ କିଛି ପ୍ରତିବାଦ କରିବ ନାହିଁ ।

### ଅହେତୁକ ବିଶ୍ୱାସରୁ ମୁକ୍ତି ପାଇବାର ଉପାୟ :-

ବାବା, ତାନ୍ତ୍ରିକ ଓ ଜ୍ୟୋତିଷମାନଙ୍କ ମାୟାଜାଲରେ ପଡ଼ିବା ଅପେକ୍ଷା ସେମାନଙ୍କଠାରୁ ନିଜକୁ ଦୂରେଇ ରଖିବାର ଉପାୟ ହେଉଛି - ଜ୍ଞାନବର୍ଦ୍ଧକ ପୁସ୍ତକ

ପାଠ କରନ୍ତୁ । ବୁଦ୍ଧିମାନ ବ୍ୟକ୍ତିମାନଙ୍କ ସହ ବିଚାର ବିମର୍ଶ କରି ନିଜର ସମସ୍ୟା ଗୁଡିକୁ ସମାଧାନ କରନ୍ତୁ । ଯେତେବେଳେ ଯାଏ ଆପଣଙ୍କର ଆଶଙ୍କା ଦୂର ନହୋଇଛି ସେତେବେଳେ ଯାଏ ନିରାଶ ହୁଅନ୍ତୁ ନାହିଁ । ଆଶାବାଦୀ ହୁଅନ୍ତୁ । ମାନସିକ ଦୁଷ୍ଚିନ୍ତାରୁ ମୁକ୍ତି ପାଇବା ପାଇଁ ଆବଶ୍ୟକ ସ୍ଥଳେ କୌଣସି ମନୋବୈଜ୍ଞାନିକଙ୍କ ସାହାଯ୍ୟ ନିଅନ୍ତୁ । ସେ ଆପଣଙ୍କ ମନରେ ଗଣ୍ଠି ବାନ୍ଧିଥିବା ଭୁଲ ଧାରଣାକୁ ସହଜ ଭାବରେ ବୁଝାଇ ଦୂର କରିଦେଇ ପାରିବେ । ଆଜିକାଲି ବଡ଼ ବଡ଼ ଡାକ୍ତରଖାନାରେ ଅତିଆଧୁନିକ ଯନ୍ତ୍ରପାତି ସହିତ ଉଚ୍ଚଶିକ୍ଷିତ ମନୋବୈଜ୍ଞାନିକ ବା ମନସ୍ତାତ୍ୱିକମାନେ ଅଛନ୍ତି । ସେମାନେ ବୈଜ୍ଞାନିକ ଚିକିତ୍ସା ପଦ୍ଧତିରେ ଅପଣଙ୍କ ମନରେ ଉପୁଜିଥିବା ଅହେତୁକ ଭ୍ରମକୁ ଦୂରକରି ଏକ ସୁସ୍ଥ ଓ ସାଧାରଣ ମଣିଷରେ ପରିଣତ କରି ଦେଇପାରିବେ । ମାନସିକ ଭାବରେ ସୁସ୍ଥଥିବା ବ୍ୟକ୍ତିର ଆତ୍ମବିଶ୍ୱାସ ଦୃଢହୋଇଥାଏ । ସେଥିପାଇଁ ସେ ନିଜ ସମସ୍ୟାର ସହଜ ସମାଧାନ ଖୋଜି ପାଇଥାଏ ।

ତଥାକଥିତ ବାବା, ତାନ୍ତ୍ରିକ, ଜ୍ୟୋତିଷ ଧର୍ମଗୁରୁମାନଙ୍କର କପୋଳକଳ୍ପିତ ଅବଧାରଣା ଓ ଅବୈଜ୍ଞାନିକ ପଦ୍ଧତିରେ ସମସ୍ୟାର ସମାଧାନ ହୋଇ ନଥାଏ ବରଂ ଆଉ କିଛି ନୂଆ ସମସ୍ୟା ସୃଷ୍ଟି ହେବାର ଭୟ ଥାଏ ।

ଆମେ ଗୋଟିଏ କଥାକୁ ଧ୍ୟାନ ଦେବାକୁ ହେବ - ଯେଉଁମାନେ ଅନ୍ୟମାନଙ୍କର ସମସ୍ୟାକୁ ସମାଧାନ କରିପାରୁଥିବାର ଦାବି କରୁଛନ୍ତି, ସେମାନେ ନିଜର ସମସ୍ୟାକୁ ନିଜେ କାହିଁକି ସମାଧାନ କରି ପାରୁନାହାନ୍ତି ? ରୋଗହେଲେ ଡାକ୍ତରଙ୍କ ପାଖକୁ ଚିକିତ୍ସା କରାଇବାକୁ ଯାଉଛନ୍ତି କାହିଁକି ? ତାଙ୍କର ଚୋରି ହେଲେ ପୋଲିସ ପାଖକୁ ଯାଉଛନ୍ତି କାହିଁକି ? ଏହିସବୁ ପ୍ରଶ୍ନଗୁଡିକର ଉତ୍ତର ଖୋଜନ୍ତୁ ଆପେ ଆପେ ମନରୁ ଶଙ୍କା ଦୂର ହୋଇଯିବ ।

*****<>*****

# ନାସ୍ତିକର ପରିଭାଷା

ହେତୁବାଦୀ ବିଚାରଧାରା ଅନୁସାରେ 'ଈଶ୍ୱର ଓ ଧର୍ମ' ନାମରେ ଧନ୍ଦା କରୁଥିବା ବ୍ୟକ୍ତିମାନେ ହିଁ 'ନାସ୍ତିକ' । ଯେଉଁମାନେ ସତ ଧରାରେ ବାସକରି, ଧରିତ୍ରୀକୁ ଅଳିକ ବୋଲି କହୁଛନ୍ତି, ଯେଉଁମାନେ ମଣିଷ ସମାଜ ଉପରେ ନିର୍ଭରକରି ବଞ୍ଚୁଥିବା ସତ୍ତ୍ୱେ, ମଣିଷକୁ ତୁଚ୍ଛ କହୁଛନ୍ତି, ଯେଉଁମାନେ ଏହି ଦୁନିଆରେ କୌଣସି ଉତ୍ପାଦନମୂଳକ କାମ ନକରି, ମାଗଣାରେ ଖାଇବା, ପିନ୍ଧିବା ସହିତ ସବୁସୁଖ ଉପଭୋଗ କରୁଛନ୍ତି କିନ୍ତୁ ମୋକ୍ଷ ପ୍ରାପ୍ତକରି ସ୍ୱର୍ଗରେ ଯାଇ ରହିବାର ସ୍ୱପ୍ନ ଦେଖୁଛନ୍ତି, ସେହିମାନେ ହେଉଛନ୍ତି ଅସଲ 'ନାସ୍ତିକ' ।

ବିଭିନ୍ନ ଧାର୍ମିକସମାରୋହ ଏବଂ ଟିଭିମାଧମରେ ତଥାକଥିତ ଧର୍ମଗୁରୁମାନେ ପ୍ରବଚନ ଦେଇ କହୁଛନ୍ତି - "ଆମର ଏହି ପବିତ୍ର ଦେଶ ରସାତଳକୁ ଓହ୍ଲାଉଯିବ । କାରଣ ଆମେସବୁ ସୃଷ୍ଟିକର୍ତ୍ତା ଭଗବାନଙ୍କୁ ଭୁଲି ଗଲେଣି । ଭଗବାନଙ୍କ ଉପରୁ ଆସ୍ଥା ଓ ବିଶ୍ୱାସ ତୁଟିଗଲେ ସଂସାର ରହିବ କିପରି ? ଆମେ ଧିରେ ଧିରେ ନାସ୍ତିକ ପାଲଟି ଯାଉଛୁ । ଲୋଭ, ମୋହ, ମାୟା ତ୍ୟାଗକର ତେବେ ହିଁ ମୋକ୍ଷ ପ୍ରାପ୍ତ ହେବ । ଆଧାତ୍ମିକ ଚିନ୍ତନରେ ଧ୍ୟାନ ଦିଅ ।"

ସେମାନଙ୍କୁ ପ୍ରଶ୍ନ କରିବା – "ସମସ୍ତେ ଯଦି ଲୋଭ, ମୋହ, ମାୟା ତ୍ୟାଗ କରିଦେବେ ଏବଂ ମୋକ୍ଷ ପ୍ରାପ୍ତ କରି ସ୍ୱର୍ଗକୁ ଚାଲିଯିବେ, ତେବେ ଏହି ସଂସାର ରହିବା କ'ଣ ଦରକାର? ସାଧାରଣ ଲୋକମାନଙ୍କ କଥା ଛାଡ଼ନ୍ତୁ ପ୍ରଥମେ ତୁମେସବୁ ଏଠାରୁ ମୋକ୍ଷ ପ୍ରାପ୍ତକରି ଯାଉନାହଁ କାହିଁକି ? ତୁମେସବୁ ଏଠାରେ କାମ ନକରି ମାଗଣାରେ ସବୁ ଉପଭୋଗ କରୁଛ କାହିଁକି ? ସତ କଥା ହେଉଛି 'ଆମେ' ନୁହେଁ କେବଳ ତୁମମାନେ ହିଁ ନାସ୍ତିକ ପାଲଟି ଗଲଣି । ପ୍ରକୃତରେ କାଳ୍ପନିକ ଈଶ୍ୱର ଉପରେ ବିଶ୍ୱାସ କରୁନଥିବା ବ୍ୟକ୍ତି ନାସ୍ତିକ ନୁହେଁ । ନାସ୍ତିକ ସେହିମାନେ, ଯେଉଁମାନଙ୍କର ଏହି ସତ୍ୟ ପୃଥିବୀ ଉପରେ ଭରସା ନାହିଁ ଏବଂ ଏଠାରୁ ମୁକ୍ତ ହୋଇ କୌଣସି ଅଜଣା ସ୍ୱର୍ଗକୁ ଚାଲିଯିବାକୁ ଆଶା ରଖୁଛନ୍ତି ।

 

ମୁକ୍ତିପାଇଁ ସଦା ବ୍ୟାକୁଳ ରହୁଥିବା ଧର୍ମଗୁରୁମାନେ ଆତ୍ମହତ୍ୟା କରୁନାହାନ୍ତି କାହିଁକି ? ଅହେତୁକ ବିଶ୍ୱାସର ଜାଲ ବିଛାଇ, କୋଟି କୋଟି ସରଳ ବିଶ୍ୱାସୀ ଲୋକଙ୍କୁ ଶିକାରକରି ମହାଭୋଗ କରୁଥିବା ଧର୍ମଗୁରୁମାନଙ୍କୁ ପ୍ରଶ୍ନ - " ହେ ମହାମହିମ ପବିତ୍ର ଗୁରୁମାନେ ! ତୁମମାନଙ୍କର ଯଦି ଏହି ମାଟି, ଏହି ପୃଥିବୀ, ଏହି ଜୀବନରେ ଆସ୍ଥା ନାହିଁ, ତୁମେ ଯଦି ପ୍ରଭୁଙ୍କ ଚରଣାବିନ୍ଦରେ ଲୀନ ହୋଇ ମୁକ୍ତ ହୋଇଯିବାକୁ ଚାହୁଁଛ ତା'ହେଲେ ଏଠାରେ ମଠ, ଆଶ୍ରମ, ମନ୍ଦିର ଆଦି ନିର୍ମାଣ କରି ଭୋଗ ବିଳାସରେ ମାତିଛ କାହିଁକି? ଯେତେଶୀଘ୍ର ସମ୍ଭବ ଦେହ ତ୍ୟାଗକରି ସେଠାକୁ ଯାଉନା କାହିଁକି ? ଏଠାରେ କ'ଣ ପାଇଁ ଲୋକମାନଙ୍କୁ ଭଣ୍ଡାଉଛ ? ବିଜ୍ଞାନ୍ ଦ୍ୱାରା ସୃଷ୍ଟି ହୋଇଥିବା ସମସ୍ତ ସାଧନ ବ୍ୟବହାର କରୁଛ ପୁଣି ବିଜ୍ଞାନକୁ ବିରୋଧ କରୁଛ ।

ସ୍ୱର୍ଗ, ନର୍କ ଓ ପୁନର୍ଜନ୍ମ ସବୁ ମିଥ୍ୟା ପରିକଳ୍ପନା ।

ହେତୁବାଦୀମାନେ ଏତିକି ଜାଣିଛନ୍ତି ଯେ ଧର୍ମଗୁରୁମାନେ ଭଲକରି ବୁଝିଛନ୍ତି – "ସ୍ୱର୍ଗ, ନର୍କ, ବୈକୁଣ୍ଠ ଓ ପୁନର୍ଜନ୍ମ ସବୁ ମିଥ୍ୟା ।" ତା' ନହେଲେ ସେମାନେ ଏହି ଜୀବନରେ ଯାହାସବୁ ମନଭରି ଉପଭୋଗ କରୁଛନ୍ତି, ସେସବୁ ଅନ୍ୟମାନଙ୍କ ପାଇଁ ମୋହ ବା ମାୟା ବୋଲି କହୁ ନଥା'ନ୍ତେ । ସେମାନେ ଅନ୍ୟର କଷ୍ଟ ଉପାର୍ଜିତ ଧନକୁ ନିଜର ସୁଖ ଓ ସୁବିଧାପାଇଁ ସହଜରେ ହାତେଇବା ଉଦ୍ଦେଶ୍ୟରେ ଲୋକମାନଙ୍କୁ ସ୍ୱର୍ଗ, ବୈକୁଣ୍ଠ ଆଦିର ଲୋଭ ଦେଖାଉଛନ୍ତି କିମ୍ବା ନର୍କ ଓ ପୁନର୍ଜନ୍ମର ଭୟ ଦେଖାଉଛନ୍ତି । ନିଜେ ପାଣି କାଦୁଅରେ ପଶିବେନାହିଁ, କୁଟା ଖଣ୍ଡିକ ଦିଖଣ୍ଡ କରିବେ ନାହିଁ, କୃଷି, ଶିଳ୍ପ ଆଦି କୌଣସି ଉତ୍ପାଦନମୂଳକ କାର୍ଯ୍ୟରେ ଖଟିବେ ନାହିଁ, ବିକାଶମୂଳକ ଧନ୍ଦାରେ ଭାଗ ନେବେନାହିଁ, କେବଳ ମନ ମତାଣିଆ ଭାଷଣ ଦେବେ - "ତୁମେ ଏୟା କର, ତୁମେ ସେୟା କର ।"

ଆଜିର ଯୁଗରେ ସ୍ତ୍ରୀ ହେଉ କି ପୁରୁଷ ସମସ୍ତେ ଶିକ୍ଷିତ ହେଲେଣି । ଶୁଣ ହେ' ଭଣ୍ଡ ଧର୍ମଗୁରୁମାନେ ତୁମେସବୁ କ'ଣ କହୁଛ ଓ କ'ଣ କରୁଛ ସବୁ ବୁଝିପାରୁଛନ୍ତି । ଧିରେ ଧୀରେ ତୁମମାନଙ୍କର ଭାଣ୍ଡାମି ସବୁ ପଦାରେ ପଡିବାରେ ଲାଗିଛି । ସମାଜରେ ରୁହ, ସମାଜସହିତ ରୁହ । ସମାଜରୁ ନିଜକୁ ଅଲଗା ରଖିବାକୁ ଚାହିଁଲେ ଦିନେ ଖାଇବା, ପିନ୍ଧିବାକୁ ମଧ ପାଇବନାହିଁ ।

## ଧର୍ମଭଣ୍ଡମାନେ ହିଁ ନାସ୍ତିକ

ବ୍ରାହ୍ମଣବାଦୀମାନେ ବେଦ ଉପରେ ବିଶ୍ୱାସ କରୁନଥିବା ଲୋକଙ୍କୁ ନାସ୍ତିକ କହୁଛନ୍ତି । ପାଣିନୀଙ୍କ ମତରେ ଯେଉଁମାନେ ପରଲୋକରେ ବିଶ୍ୱାସ କରୁନାହାନ୍ତି ସେମାନେ ନାସ୍ତିକ । କିନ୍ତୁ ପାଣିନୀଙ୍କ ସମୟରେ ମଧ୍ୟ ଏହି ମତ ସର୍ବବ୍ୟାପକ ଥିଲା । ଆଜିଯୁଗରେ ଦର୍ଶନଗ୍ରନ୍ଥ ଯଥା : ସାଂଖ୍ୟ ଯୋଗ, ନ୍ୟାୟ ଯୋଗ, ବୈଶେଷିକ ଯୋଗ, ପୂର୍ବ ମୀମାଂସା ଯୋଗ ଏବଂ ଉତ୍ତର ମୀମାଂସା ଯୋଗ ଅଧ୍ୟୟନ କଲେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଈଶ୍ୱର ବିଶ୍ୱାସ ବା ଅବିଶ୍ୱାସ ସହିତ ନାସ୍ତିକ ଶବ୍ଦର କୌଣସି ସମ୍ବନ୍ଧ ନାହିଁ ।

1. ବେଦାନ୍ତ ଦର୍ଶନ, 2. ଯୋଗ ଦର୍ଶନ, 3. ସାଂଖ୍ୟ ଦର୍ଶନ, 4. ବୈଶେଷିକ ଦର୍ଶନ, 5. ନ୍ୟାୟ ଦର୍ଶନ ଓ 6. ମୀମାଂସା ଦର୍ଶନ । ଏହି ଛଅଟି ଗ୍ରନ୍ଥ ନିରୀଶ୍ୱରବାଦର କଥାକହେ । କିନ୍ତୁ ଏହି ଗ୍ରନ୍ଥଗୁଡ଼ିକର ଭାବଧାରାକୁ ଜଗତଗୁରୁ ଆଦି ଶଙ୍କରାଚାର୍ଯ୍ୟଙ୍କ ପ୍ରଭାବଶାଳୀ ଭାବବାଦ ପ୍ରଚାରଦ୍ୱାରା ଚାପି ଦିଆଯିବା ପରେ ଆଜି ଯେଉଁମାନେ ପୁରାଣ ପୋଥିରେ ଲେଖାଥିବା ଉଦ୍ଭଟ ବିଷୟବସ୍ତୁକୁ ବିଶ୍ୱାସ ନକରି ମୁକ୍ତ ଚିନ୍ତକ ହୋଇଛନ୍ତି, ଯେଉଁମାନେ କିଛି ନୂଆ ତଥ୍ୟ ଖୋଜି ପାଇବାକୁ ଚାହୁଁଛନ୍ତି, ଯେଉଁମାନେ ଅନୁସନ୍ଧିତ୍ସୁ ହୋଇ ତର୍କସଙ୍ଗତ ବିଚାର ଅନୁସାରେ କାମକରି ଆଗେଇବାକୁ ଚାହୁଁଛନ୍ତି, ସେହିମାନଙ୍କୁ ନାସ୍ତିକ କୁହାଯାଉଛି । ଅନ୍ୟ ଅର୍ଥରେ ରୁଢ଼ିବାଦୀଙ୍କୁ ବିରୋଧ କରୁଥିବା ବ୍ୟକ୍ତିଙ୍କୁ ନାସ୍ତିକ କୁହାଯାଉଛି । କିନ୍ତୁ ବାସ୍ତବତା ଦୃଷ୍ଟିରୁ ଧର୍ମଭଣ୍ଡମାନେ ହିଁ ନାସ୍ତିକ । କାରଣ ସେମାନେ ବାସ୍ତବ ଜଗତରେ ବାସ କରୁଥିବା ମାନବ ଓ ମାନବିକତାର ପରିପନ୍ଥୀ । ଯିଏ ନିଜର ଘର, ପରିବାର ଓ ସମାଜକୁ କିଛି ନଦେଇ କେବଳ ନେବାରେ ବିଶ୍ୱାସ କରୁଛନ୍ତି, ସେମାନେ ସ୍ୱାର୍ଥପର ନୁହନ୍ତି ତ ଆଉ କ'ଣ ? ନିଜକୁ ଆସ୍ତିକ ବୋଲାଉଥିବା ଏହି ସ୍ୱାର୍ଥପର ଲୋକମାନଙ୍କର ଯଦି 'ଭଗବାନ' ଉପରେ ସତରେ ଗଭୀର ଆସ୍ଥା ଓ ବିଶ୍ୱାସ ଥାଆନ୍ତା, ତା'ହେଲେ ସେମାନେ ଭଗବାନ ନାମଜପି ଏକ ପକ୍ଷରେ ଧାର୍ମିକ ଓ ଅନ୍ୟ ପକ୍ଷରେ ନାନାଦି କୁକର୍ମରେ ଲିପ୍ତରହି ଅପରାଧୀ ଭାବେ ଅଭିଯୁକ୍ତ ହୁଅନ୍ତେ ନାହିଁ ।

## 'ଧର୍ମ' ଆତ୍ମା, ପରମାତ୍ମା ଓ ଈଶ୍ୱର ସମ୍ବନ୍ଧୀୟ ନଥିଲା

ଏ ସମ୍ପର୍କରେ ବିସ୍ତାରିତ ଓ ଗଭୀର ଆଲୋଚନା କଲେ ଜଣାଯାଏ, ଅତୀତ କାଳରେ ଶୃଙ୍ଖଳିତ ଜୀବନଯାତ୍ରା ପାଇଁ ପ୍ରଚଳିତ ଆଚାରସଂହିତା ବା ବିଧି ସମୂହ, ଯାହା 'ଧର୍ମ' ନାମରେ ପରିଚିତ, ତାହା ଥିଲା ସମ୍ପୂର୍ଣ୍ଣ ବ୍ୟକ୍ତିଗତ ବିଶ୍ୱାସର ଚଳଣି । ପରବର୍ତ୍ତୀ କାଳରେ ଧର୍ମକୁ ଆତ୍ମା, ପରମାତ୍ମା, ଇହଲୋକ, ପରଲୋକ ଓ ପୁନର୍ଜନ୍ମ ସହିତ ଯୋଡିଦିଆ ଯିବାରୁ ଏହା ଆଧ୍ୟାତ୍ମିକ ରସସିକ୍ତ ହୋଇ 'ଈଶ୍ୱର ବିଶ୍ୱାସ' କୁ ବ୍ୟାପକ ପ୍ରଚାର କଲା । ପ୍ରଥମେ 'ଧର୍ମ' ଆତ୍ମା, ପରମାତ୍ମା ଓ ଈଶ୍ୱର ସମ୍ବନ୍ଧୀୟ ନଥିଲା । 'ଧର୍ମ' ର ପ୍ରାଥମିକ ଉଦ୍ଦେଶ୍ୟ ଥିଲା ଭିନ୍ନ । ତଥାକଥିତ ସ୍ୱାର୍ଥପର ଧାର୍ମିକମାନଙ୍କୁ ଆମେ ଉଭୟ ଦୃଷ୍ଟିକୋଣରୁ ନାସ୍ତିକ କହିବା ନାହିଁ କାହିଁକି ? ଧାର୍ମିକମାନଙ୍କର ସଂସାର ଉପରେ ଆସ୍ଥା ନାହିଁ କି କାଳ୍ପନିକ ଦେବୀ ଦେବତାଙ୍କ ଉପରେ ମଧ୍ୟ ଆସ୍ଥା ନାହିଁ । ସେମାନେ କେବଳ ଭୋଗୀ ଓ ସ୍ୱାର୍ଥାନ୍ଧ ।

## ଯୁକ୍ତିବାଦୀ ଧାର୍ମିକମାନେ ହିଁ ଆସ୍ତିକ

ଧାର୍ମିକମାନଙ୍କର ବୁଝିବା ଉଚିତ ଯେ 'ଧର୍ମ' ର କୌଣସି ଦେବୀ ଦେବତା କିମ୍ବା ସ୍ୱର୍ଗ ଓ ନର୍କ ସହ ଯେହେତୁ କୌଣସି ସମ୍ପର୍କ ନାହିଁ ତେଣୁ ସେମାନେ ପୂଜା, ପ୍ରାର୍ଥନା, ଯଜ୍ଞ, ଭଜନ, କୀର୍ତ୍ତନରେ ଲୋକମାନଙ୍କୁ ନ ମତାଇ ସାଂସାରିକ ବିଷୟ ପ୍ରତି ଆକୃଷ୍ଟ କରାଇବା ଉଚିତ । 'ଧର୍ମ' ସମ୍ପୂର୍ଣ୍ଣ ଭାବେ ଏହି ସଂସାରର, ଏହି ସମାଜର ଏବଂ ଏହି ଜୀବନର ବିଷୟ । କେବଳ ମଣିଷ ପାଇଁ ନୁହେଁ, ବରଂ ସମଗ୍ର ଜୀବଜଗତ ପାଇଁ ନିଜ ନିଜର ନିଃସ୍ୱାର୍ଥ ସେବାଦାନ ହିଁ ମଣିଷର ଧର୍ମ । ଏହି ଅର୍ଥରେ ଯେଉଁ ଲୋକଟି ଧାର୍ମିକ ସେ କାହାରି ଅନିଷ୍ଟ ଚାହେଁ ନାହିଁ କିମ୍ବା ନିଜକୁ ସ୍ୱାର୍ଥପର କରେନାହିଁ । ନିହାତି ଉପଭୋକ୍ତାବାଦୀ ହୋଇଯାଏ ନାହିଁ । ନିଜର ସାମର୍ଥ୍ୟ ମୁତାବକ ଅନ୍ୟକୁ ସାହାଯ୍ୟ କରିବାକୁ ଚାହେଁ । ବିପଦାପନ୍ନଙ୍କୁ ଉଦ୍ଧାର କରେ । ଦୁଷ୍ଟ, ବଦମାସ, ପାଷାଣ୍ଡମାନଙ୍କୁ ଦମନ କରିବାକୁ ଚେଷ୍ଟା କରେ । ଦୁର୍ନୀତି, ଶୋଷଣ, ଅତ୍ୟାଚାର ବନ୍ଦ କରିବାକୁ ସଂଗ୍ରାମୀ ଭୂମିକା ନିଏ । ସେ କାଳ୍ପନିକ ଈଶ୍ୱର, ଆତ୍ମା ଓ ପରଲୋକ ବିଷୟକ ଉଦ୍ଭଟ ଆଲୋଚନାରେ ପଶି ଅଯଥା ସମୟ ନଷ୍ଟ କରିବାକୁ ଚାହେଁନାହିଁ । ସବୁକଥାକୁ ତର୍କସଙ୍ଗତ ଢଙ୍ଗରେ ବିଚାରକରି ଯାହା ଯୁକ୍ତି ସିଦ୍ଧ ତାହା

ସେ କରିବାକୁ ଚାହେଁ । ସେଭଳି ଯୁକ୍ତିବାଦୀ ଧାର୍ମିକମାନେ ହିଁ ଆସ୍ତିକ । ମନର ପ୍ରତ୍ୟେକ ଝର୍କା ଖୋଲାରଖି ଯେଉଁମାନେ ସର୍ବଦିଗରୁ ଜ୍ଞାନଆହରଣ କରନ୍ତି, ସେମାନେ ନାସ୍ତିକ ହେବେ କିପରି ? କିନ୍ତୁ ଆମଦେଶର ବାବା, ମାତା, ସ୍ୱୟଂଭୂ ଅବତାରମାନେ କୌଣସି କଥାର ପ୍ରମାଣ ଖୋଜିବାକୁ ବାରଣ କରନ୍ତି । ସେଥିପାଇଁ ସେମାନେ କହୁଛନ୍ତି - "ବିଶ୍ୱାସେ ମିଳଇ ହରି ତର୍କେ ବହୁ ଦୂର" ଅର୍ଥାତ ବିଜ୍ଞତା ନଦେଖାଇ, ସେମାନେ ଯାହା କହୁଛନ୍ତି ମୂର୍ଖଭଳି ପ୍ରଶ୍ନ ନକରି ମାନିଯାଅ । ଈଶ୍ୱର ବିଶ୍ୱାସ ପ୍ରସଙ୍ଗରେ ଏପରି ବକ୍ତବ୍ୟ ପ୍ରଚାରିତ ହୋଇଛି । ତେଣୁ ଯୁକ୍ତି ସଙ୍ଗତ, ନିରପେକ୍ଷ ବିଚାର ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ନାହିଁ କହୁଥିବା ବ୍ୟକ୍ତିମାନେ ହିଁ ନାସ୍ତିକ । ଈଶ୍ୱର ଅଛି ନା ନାହିଁ ଏଭଳି ପ୍ରଶ୍ନକୁ ଏଡାଇ ଯାଉଥିବା ବ୍ୟକ୍ତିମାନଙ୍କୁ ନାସ୍ତିକ ନ କହି ଆଉ କ'ଣ କୁହାଯିବ ?

### ଈଶ୍ୱର କଳ୍ପନା ପ୍ରାକ ଐତିହାସିକ ଯୁଗରୁ ସୃଷ୍ଟି ହୋଇଛି

ଏହା ସତ୍ୟ ଯେ ଏହି ମହାଜଗତରେ ଈଶ୍ୱରର ସତ୍ତା କିଛି ନାହିଁ ଏହା ବହୁଥର ପରୀକ୍ଷିତ । ସୂର୍ଯ୍ୟ, ଚନ୍ଦ୍ରଙ୍କୁ ମଧ ଆମେ ଦେବତା ବୋଲି ମାନୁଥିଲୁ । ଆଜି ସୂର୍ଯ୍ୟ ଏକ ତାରା ଓ ଚନ୍ଦ୍ର ଏକ ଉପଗ୍ରହ ବୋଲି ସମସ୍ତେ ମାନୁଛନ୍ତି । ଜୀବନ ତଥା ପ୍ରାଣୀଜଗତ ଭଗବାନ ସୃଷ୍ଟି ବୋଲି କହୁଥିଲୁ । ଏବେ କ୍ଲୋନିଙ୍ଗ ପଦ୍ଧତିରେ ମୂଷା, ବିଲେଇ, ମେଣ୍ଢା ଓ ମଣିଷ ପର୍ଯ୍ୟନ୍ତ ବିଜ୍ଞାନ ପରୀକ୍ଷାଗାରରେ ସୃଷ୍ଟି କରାଯାଇ ପାରିଲାଣି । 'ଈଶ୍ୱର' କଳ୍ପନାଟି ପ୍ରାକ ଐତିହାସିକ ଯୁଗର ଅଜ୍ଞ ବ୍ୟକ୍ତିମାନଙ୍କ ଦ୍ୱାରା ଏକ କାଳ୍ପନିକ ଶକ୍ତି ଥିଲା । ଯାହାଦ୍ୱାରା ସେମାନେ ସମସ୍ତ ବିପଦ ଆପଦରୁ ରକ୍ଷା ପାଇବେ ବୋଲି ଆଶା କରୁଥିଲେ । ସେହି କାଳ୍ପନିକ ଶକ୍ତି ସେମାନଙ୍କୁ କେବେ ବି କୌଣସି ବିପଦ ଆପଦରୁ ରକ୍ଷା କରିପାରିନାହିଁ, ଏହା ବାରମ୍ବାର ପ୍ରମାଣିତ ହୋଇସାରିଛି । ମଣିଷ ନିଜେ ହିଁ ନିଜର ସୁରକ୍ଷା ଉପାୟ ଖୋଜି ପାଉଛି ।

### 'ଈଶ୍ୱର ଯଦି ନିରାକାର କିମ୍ବା ଦେହଧାରୀ ନୁହନ୍ତି' ତେବେ ସେ କଅଣ?

ଦଳେ ଧର୍ମାନ୍ଧ ଈଶ୍ୱର ସତ୍ତାକୁ ଦେଖି ନପାରି ଈଶ୍ୱର ନିରାକାର କହୁଥିବା ବେଳେ ଆଉ ଦଳେ ସାକାର ବା ଦେହଧାରୀ ବୋଲି କହୁଛନ୍ତି । ଯେତେ ତାଲାକି କଲେ କ'ଣ ହେବ, ସେମାନଙ୍କ ନିଜସ୍ୱ ଚରିତ୍ର, ସେମାନଙ୍କ ବଚନ ଏବଂ

ଅବୈଜ୍ଞାନିକ ଚିନ୍ତା ଚେତନା ସେମାନଙ୍କୁ ବହୁ ଘଟଣାରେ ଅପଦସ୍ଥ କରୁଥିଲେ ମଧ୍ୟ ସେମାନେ ଅର୍ଥ ଓ ବାହୁ ବଳରେ କେବଳ ମୁହଁରେ ଫୁଟାଣି ଦେଖାଉଛନ୍ତି । 'ନିରାକାର' ମାନେ ଯାହାର କୌଣସି ଆକାର ନାହିଁ, ସେ ନିର୍ବିକାର ଓ ନିର୍ଲିପ୍ତ ଅର୍ଥାତ ସେ ଥିବା ନଥିବା ସମାନ । ସେଭଳି ଯଦି କେହି ଅଛନ୍ତି ତ ଥାଆନ୍ତୁ । ସେ ତ ଆମର କୌଣସି ସମସ୍ୟାରେ ଲିପ୍ତ ହୋଇପାରିବେ ନାହିଁ, ସେଭଳି ନିରାକାର ଭଗବାନ ଉପରେ ତର୍କ କରିବା କ'ଣ ଆବଶ୍ୟକ ? ଆମର ତେଲ ଲୁଣ ସଂସାରର ସମସ୍ୟାର ସମାଧାନ ପାଇଁ ତା' ଉପରେ ନିର୍ଭର କରି କି ଲାଭ ? ହଁ କର୍ମ ହିଁ ଯଦି ଭଗବାନ, ଆମେ କର୍ମ କରୁଛୁ, ଆଉ ସତ୍ୟ ହିଁ ଯଦି ଭଗବାନ ଆମେ ସବୁବେଳେ ସତ୍ୟ କହିବୁ, ସେଥିରେ କାଳ୍ପନିକ ଭଗବାନ ଶବ୍ଦଟି ଯୋଡିବା କାହିଁକି ?

ଭଗବାନର ସାକାର ରୂପ ଯଦି ମଣିଷ ଭଳି ସଂସାରରେ ଜନ୍ମ ନିଏ, ଅନ୍ୟ ମଣିଷ ଭଳି ଜୀବନ ବିତାଏ ଓ ଶେଷରେ ମୃତ୍ୟୁ ବରଣ କରେ ତେବେ ବି ସେ ତ ସମାଜର ଦୁଃଖ ଦୈନ୍ୟ ସବୁ ଦୈବୀଶକ୍ତି ବଳରେ ବା ଚମତ୍କାରୀ ଢଙ୍ଗରେ ନିବାରଣ କରୁଥିବା ଦେଖା ଯାଉନି । ସେ ସଂସାରରେ ସର୍ବ ଶକ୍ତିମାନ, ସର୍ବଜ୍ଞ ଓ ସର୍ବବିଦ୍ୟମାନ ବ୍ୟକ୍ତି ରୂପେ ତ କେଉଁଠି ଦେଖିବାକୁ ମିଳୁନି । ତେଣୁ ଭଗବାନଙ୍କୁ ଦେହଧାରୀ ବୋଲି ମାନିବା କିପରି ?

ଭଗବାନର ଅବତାରବାଦ ମଧ୍ୟ ବିଚିତ୍ର କଳ୍ପନା । ଆଜି ପର୍ଯ୍ୟନ୍ତ ସୃଷ୍ଟିର ଚାରିଯୁଗରେ ବିଷ୍ଣୁ ମାତ୍ର ଦଶଥର ଅବତାର ଗ୍ରହଣ କରିଛନ୍ତି । ପ୍ରତିଥର ଜଣେ ମାତ୍ର ଅସୁର ବା ଦୁଷ୍ଟବ୍ୟକ୍ତିକୁ ମାରିଦେଇ ପୁଣି ସ୍ୱର୍ଗକୁ ଫେରିଯାଇଛନ୍ତି । ଗୋଟିଏ ଯୁଗର ହିସାବ ଲକ୍ଷ ଲକ୍ଷ ବର୍ଷ । ଜଣେ ମଣିଷର ବୟସ ମାତ୍ର ଶହେ ବର୍ଷ ଭିତରେ । ତେଣୁ ପ୍ରଶ୍ନ ଉଠୁଛି – "ଗୋଟିଏ ଅବତାର କେତେଜଣ ମଣିଷଙ୍କ ଦୁଃଖ ଦୂର କରୁଛି ?" ଏଇଟା ହେଉଛି କଳିଯୁଗ, ଏହି ଯୁଗରେ ଭଗବାନ ବିଷ୍ଣୁ କଳ୍କୀଅବତାର ନେଇ ଅବତାର ନେବା କଥା । କେହି ଜାଣିନାହାନ୍ତି ସେ ଅବତାର ନେଇ ଏଠାରେ ରହୁଛନ୍ତି ନା ଆହୁରି କେତେ ବର୍ଷପରେ ଅବତାର ନେବେ ? ଦ୍ୱିତୀୟ ପ୍ରଶ୍ନ ଉଠୁଛି- "ସବୁ ଅବତାର ଯଦି କେବଳ ଭାରତ ବର୍ଷରେ ହିଁ ଜନ୍ମ ନେଉଛନ୍ତି, ତେବେ ଦୁନିଆର ବାକି ଦେଶମାନଙ୍କରେ ଥିବା ଅସୁର ଓ ଦୁଷ୍ଟମାନଙ୍କୁ କିଏ ମାରିବ? ଅନ୍ୟ ଧର୍ମର

ଭଗବାନମାନେ ଅବତାର ଗ୍ରହଣ କରୁଥିବା କଥା ତ ଶୁଣା ଯାଉନି । ଆମେ ବୁଝିବା ଉଚିତ ଯେ କାଳ୍ପନିକ ଭଗବାନ 'ସାକାର ହେଉ କି ନିରାକାର' ସେ ଆମର ଚଳନ୍ତି ଜୀବନରେ ସ୍ଥିତି ଓ ପ୍ରଗତିର ବାହକ ନୁହେଁ ।

## ଭଗବାନ ଭୟ ଦୁଷ୍ଟ ଲୋକଙ୍କୁ ଅପରାଧରୁ ନିବୃତ କରେ ନାହିଁ

ଏ ଯୁଗରେ ମଣିଷ ଯଥେଷ୍ଟ ଜ୍ଞାନ ଅର୍ଜନ କରିସାରିଲାଣି । ବୈଜ୍ଞାନିକ ପଦ୍ଧତି ଯୋଗୁ ବିଭିନ୍ନ ଘଟଣ ଓ ଅଘଟଣର କାର୍ଯ୍ୟ ତଥା କାରଣ ସମ୍ପର୍କରେ ଜାଣିସାରିଲାଣି । ସେ ବୁଝିଲାଣି ଯେ ଦୁନିଆର ଭଲ, ମନ୍ଦ ଫଳାଫଳ ସହିତ ଦେବାଦେବୀ, ପୂଜାପାର୍ବଣ, ବ୍ରତଉପବାସ ଆଦିର କୌଣସି ସମ୍ବନ୍ଧ ନାହିଁ । କାଳ୍ପନିକ ଦେବତାର ଭୟ ଦେଖାଇ ଦୁଷ୍ଟଲୋକଙ୍କୁ ଆଉ କୁକର୍ମ ବା ଅପରାଧରୁ ନିବୃତ କରିହେବନି । ଏବେ ମନ୍ଦିରରୁ ମୂର୍ତ୍ତି ଓ ଗହଣା ଚୋରି ଏବଂ ଧର୍ମପୀଠମାନଙ୍କରେ ନାରୀ ଧର୍ଷଣ, ନରହତ୍ୟା ହେଉଥିବାର ଅସଂଖ୍ୟ ଉଦାହରଣ ପ୍ରମାଣିତ କରୁଛି ଯେ କାହାରି ମଧ ଭଗବାନର ଭୟ ନାହିଁ । ଭଗବାନ ଯେହେତୁ ଏକ କାଳ୍ପନିକ ଶକ୍ତି ସେ ଅସାମାଜିକ ବ୍ୟକ୍ତିର ଅପରାଧ ଦେଖିବ କିପରି, ତାକୁ ଦଣ୍ଡ ଦେବ କିପରି ? ସେଥିପାଇଁ ସମାଜରେ ଘଟୁଥିବା ସମସ୍ତ ପ୍ରକାର ଅପରାଧକୁ ନିୟନ୍ତ୍ରଣ କରିବା ପାଇଁ ମଣିଷମାନେ ହିଁ ନୀତି ନିୟମ ତିଆରି କରିଛନ୍ତି । ପୋଲିସ ବିଭାଗ ଓ କୋର୍ଟ କଚେରୀ ଖୋଲା ଯାଇଛି । ଦୋଷୀକୁ ଶାସ୍ତି ଦେବାପାଇଁ ବିଭିନ୍ନ ଦଣ୍ଡ ବିଧାନ ପ୍ରଣୟନ କରାହୋଇଛି । ଏହା ବ୍ୟତୀତ ସାମାଜିକ ନିନ୍ଦା ଓ ବାସନ୍ଦ ଭୟରେ ଦୁଷ୍ଟବ୍ୟକ୍ତିମାନେ ଅପରାଧ କରିବାକୁ ଭୟ କରିଥାନ୍ତି ।

ଆଜି ଆଧୁନିକ ବିଜ୍ଞାନର ପ୍ରଭାବରେ ମଣିଷ କ୍ରମାଗତ ଭାବେ ଯୁକ୍ତିବାଦୀ ହୋଇ ଆଧାରହୀନ ଭଗବତ ବିଶ୍ୱାସ ପ୍ରତି ବିମୁଖ ହେଉଥିବାରୁ ତଥାକଥିତ ଧାର୍ମିକମାନଙ୍କ ମଉଜିଆ ଜୀବନ କାଳେ ଗଡ଼ବଡ଼ ହୋଇଯିବ, ସେଥିପ୍ରତି ସଜାଗହୋଇ ସେମାନେ ଯୋଗ, ପ୍ରାଣାୟାମ ଆଦି ଶରୀରଚର୍ଯ୍ୟାକୁ ଭଗବାନ ଉପାସନା ବୋଲି କହିଲେଣି । ଏମିତି ଚାଲାକି ଚଳାଇ ଭଗବାନ ପ୍ରତି ବିଶ୍ୱାସ ପୁନଃଜାଗ୍ରତ କରାଉବାର ଚକ୍ରାନ୍ତ ଚାଲିଛି । ଅସଂଖ୍ୟ ଦୋଷୀ ଖସି ଯାଉଥିବା ଓ ନିର୍ଦ୍ଦୋଷ ଲୋକ ଦଣ୍ଡ ପାଉଥିବା ପ୍ରଶ୍ନର ଉତର ଦେଇ ଧର୍ମଗୁରୁମାନେ କହୁଛନ୍ତି -

"ଭଗବାନ କେବଳ ଦଣ୍ଡ ଦିଅନ୍ତିନାହିଁ, ପରମଦୟାଳୁ ଭାବରେ ପାପିଙ୍କୁ କ୍ଷମା ମଧ୍ୟ କରିଦିଅନ୍ତି ।" କ୍ଷମା ବା ପ୍ରାୟଶ୍ଚିତ ପାଇଁ, ଦାନ, ଦକ୍ଷିଣା ଦେଇ ଯାଗଯଜ୍ଞ, ଗ୍ରହଶାନ୍ତି, ପୂଜାପାଠ କରିବା ମଧ୍ୟ ଆବଶ୍ୟକ ବୋଲି କହିଥାନ୍ତି । ଯେଉଁମାନେ ଶୋଷଣର ଚାଲାକି ବୁଝି ସାରିଲେଣି, ସେମାନେ ଆଉ ଠକି ହେଉନାହାନ୍ତି । ମିଥ୍ୟା ଓ କାଳ୍ପନିକ ସ୍ୱର୍ଗ ଅପେକ୍ଷା ବାସ୍ତବ ଜଗତକୁ ଜାଣିବା ପାଇଁ ଶିକ୍ଷିତ ଲୋକମାନେ ବିଜ୍ଞାନପାଠ ଉପରେ ଧ୍ୟାନ କେନ୍ଦ୍ରିତ କଲେଣି । ଚାରିପାର୍ଶ୍ୱରେ ଥିବା ସମସ୍ତ ନିର୍ଜୀବ ଓ ସଜୀବ ବସ୍ତୁଜଗତ ସହିତ ନିକଟ ସମ୍ପର୍କ ବଢ଼ାଉଛନ୍ତି । କାରଣ ସେ ସମସ୍ତ ଆମର ସ୍ଥାୟୀତ୍ୱ ଓ ବିକାଶର ଆଧାର । ଆମର ପ୍ରତିଟି ସ୍ୱାର୍ଥର ସାଧନ ଉଦ୍ଭିଦ ଓ ପ୍ରାଣୀଜଗତ ଦ୍ୱାରା ହୋଇଥାଏ । ସେଥିପାଇଁ ଏହି ପୃଥିବୀର ମଣିଷ, ପଶୁପକ୍ଷୀ, ବୃକ୍ଷଲତା ଆଦି ଆମର ଶ୍ରଦ୍ଧାରପାତ୍ର ହେବା ଉଚିତ । ଆମେ ଏହାଙ୍କୁ ଉଚିତ ସଂରକ୍ଷଣ, ସୁବିଧା ଓ ସମ୍ମାନ ଦେଲେ, ଏପରିକି ପାହାଡ଼, ପର୍ବତ, ନଦୀ, ସମୁଦ୍ର ତଥା ବିଶାଳ ଆକାଶକୁ ପ୍ରଦୂଷଣମୁକ୍ତ ରଖିପାରିଲେ, ପ୍ରକୃତି ଆମପାଇଁ କଲ୍ୟାଣମୟୀ ହୋଇପାରିବ । ଯାହା ଫଳରେ ଆମେ ସେସବୁଥିରୁ ଉପକୃତ ଓ ଲାଭବାନ ହୋଇପାରିବା ।

## ଯିଏ ମାନବିକତାକୁ ବିଶ୍ୱାସ କରେନାହିଁ ସେ ନାସ୍ତିକ

ଏହି ଆଲୋଚନା ଦ୍ୱାରା ସ୍ପଷ୍ଟ ହେଉଛି ଯେ, ଅଗ୍ରଗତି ପାଇଁ ଅହେତୁକ ବିଶ୍ୱାସ ଗୁଡ଼ିକ ପରିହାର କରିବା ଉଚିତ । ବିଶ୍ୱ ତଥା ବାସ୍ତବ ସଂସାର ଉପରେ ଆସ୍ଥାରଖି ଆସ୍ତିକ ହୁଅ । ଭଗବାନ, ଆତ୍ମା, ପରମାତ୍ମା ଓ ଆଧ୍ୟାତ୍ମିକତା ପ୍ରତି ଅନୁରକ୍ତି ରଖିବା ବାହାନାରେ ଛଳନାକାରୀ ସ୍ୱାର୍ଥପର ହୁଅନାହିଁ । ଏଣେ ପୃଥିବୀକୁ ମିଛ ମାୟାର ସଂସାର କହି, ତେଣେ କଳ୍ପିତ ଭଗବାନକୁ ତିଳେ ମଧ୍ୟ ଭୟ ନକରି ଅମାନିଆ ନାସ୍ତିକ ହୁଅନାହିଁ । ଅହେତୁକ ବିଶ୍ୱାସରେ ନପଡ଼ି, ବ୍ୟକ୍ତି ଓ ସମାଜର ସାମୂହିକ ପ୍ରଗତି ପାଇଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ କର୍ମରେ ଆସ୍ଥା ରଖୁଥିବା ଆଧୁନିକ ଲୋକ ହିଁ ଆସ୍ତିକ । ସେମାନେ ନାସ୍ତିକ ନୁହନ୍ତି, ସେମାନେ କେବଳ ନିରୀଶ୍ୱରବାଦୀ ବା ହେତୁବାଦୀ । ସ୍ୱାମୀ ବିବେକାନନ୍ଦ କହିଛନ୍ତି - "ଯିଏ ଭଗବାନଙ୍କୁ ବିଶ୍ୱାସ କରୁନାହିଁ, ସେ ନୁହେଁ ବରଂ ଯିଏ ମାନବିକତାକୁ ବିଶ୍ୱାସ କରୁନାହିଁ ସେ ହେଉଛି ନାସ୍ତିକ ।"

*****<>*****

# ଛୁଆଁ ଅଛୁଆଁ ଭେଦଭାବ କାହିଁକି ?

ଆମ ଦେଶରେ ଜାତିଗତ ପ୍ରଭେଦକୁ ନେଇ ଉପୁଜିଥିବା ଗୋଟିଏ ମୁଖ୍ୟ ସମସ୍ୟା ହେଉଛି " ଛୁଆଁ-ଅଛୁଆଁ" ଭେଦଭାବ । ଏଉଠି ପ୍ରଶ୍ନ ଉଠୁଛି – ଦେଶରେ 125 କୋଟି ଲୋକଙ୍କ ମଧ୍ୟରେ ବାସ କରୁଥିବା ଅଳ୍ପ ସଂଖ୍ୟକ ଦଳିତ ଶୁଦ୍ରମାନଙ୍କ ସ୍ପର୍ଶ ମାତ୍ରକେ ଉଚ୍ଚବର୍ଗର ଲୋକମାନେ ଧର୍ମଭ୍ରଷ୍ଟ ହୋଇଯାଉଛନ୍ତି କାହିଁକି ? ସେମାନେ ମନ୍ଦିର ଭିତରକୁ ପଶିଲେ ନିଜେ ଭଗବାନ ମଧ୍ୟ ଅପବିତ୍ର ହୋଇଯାଉଛନ୍ତି କାହିଁକି ? କୂଅରୁ ପାଣି ବାହାର କଲେ ଅବଶିଷ୍ଟ ପାଣି ଅପବିତ୍ର ହୋଇଯାଉଛି କିପରି ?

## ଆମେ ଚାରି ପାଖର ଦୁନିଆକୁ ଭୁଲି ଯାଉଛୁ

ଅନ୍ୟ କୌଣସି ଦେଶରେ ଥିବା କଟ୍ଟର ଧାର୍ମିକ ଗୋଷ୍ଠୀ ଭିତରେ ମଧ୍ୟ ଏହି ଘୃଣ୍ୟ ପରମ୍ପରା ନାହିଁ । ମଣିଷ ମଣିଷକୁ ଛୁଇଁଲେ ଅପବିତ୍ର ହୋଇଯିବାର ବିଶ୍ୱାସ କେବଳ ହିନ୍ଦୁ ଧର୍ମରେ ହିଁ ଅଛି । ଆମଦେଶ ଅଧ୍ୟାତ୍ମବାଦୀ ଦେଶ, କିନ୍ତୁ ଏଠାରେ ମଣିଷ ମଣିଷକୁ ସମ୍ମାନ ଦେବାରେ ପଛେଇ ରହୁଛୁ । ୟୁରୋପ ଯଦିଓ ଭୌତିକବାଦୀ ଦେଶ ଭାବେ ପରିଚିତ, ତଥାପି ସେଉଠି ମାନବିକ ମର୍ଯ୍ୟାଦା ଏକ ସ୍ୱୀକୃତ ମୂଲ୍ୟବୋଧ ଭାବେ ସମାଜରେ ଗୃହୀତ । ସେମାନେ ଆମେରିକା ଓ ଫ୍ରାନ୍ସରେ କ୍ରାନ୍ତି ଚଳାଉଥିବା ସମୟରେ ହିଁ ମଣିଷ- ମଣିଷ ମଧ୍ୟରେ ସମାନତାର ଘୋଷଣା କରିସାରିଛନ୍ତି । ଆମେ ଆତ୍ମା ପରମାତ୍ମାର ଅବସ୍ଥିତିକୁ ନେଇ ଏତେ ଚିନ୍ତିତ ଯେ, ଆମ ଚାରିପାଖର ଦୁନିଆକୁ ଭୁଲି ଯାଉଛୁ ଏବଂ ଆମର ବାଦବିବାଦ ସରୁନାହିଁ । ଦଳିତ ଓ ଶୂଦ୍ରଙ୍କୁ ସମାନ ଅଧିକାର ଦିଆଯାଇପାରିବ କି ନାହିଁ ତା'ଉପରେ ଗରମା ଗରମ ତର୍କ ବିତର୍କ ଚାଲିଛି ।

ଆଗରୁ ଶୂଦ୍ରମାନେ ବେଦଶାସ୍ତ୍ର ପଢିପାରିବେ ନାହିଁ ବୋଲି ଯେଉଁ ବାରଣ ଥିଲା ତାହା ଅବଶ୍ୟ ଆଜି ଆଉ ନାହିଁ । କିନ୍ତୁ ସେସବୁ ପଢି, ଠିକ ଅର୍ଥରେ ବୁଝି ତର୍କ କଲାଭଳି ଜ୍ଞାନ ବହୁତ କମ ଲୋକଙ୍କର ଅଛି । ଅସଲ କଥା ହେଉଛି - ବାପା ଦାଦା ଅମଳରୁ ନିଷେଧ କରାଯାଉଥିବା ଧର୍ମଶାସ୍ତ୍ର ଗୁଡିକ ପଢ଼ିବା ସୁଯୋଗ ପାଉଥିବାରୁ

 

ନିଜକୁ ଧନ୍ୟ ମନେ କରୁଛନ୍ତି । ବେଦପାଠ କରି ଆମର ଜୀବନ ସାର୍ଥକ ହୋଇଗଲା ବୋଲି ଭାବୁଛନ୍ତି । ମାନସିକ ଗୋଲାମୀରୁ ମୁକ୍ତ ହୋଇପାରୁ ନଥିବାରୁ ସେମାନେ ଏଭଳି ଭାବୁଛନ୍ତି । ବେଦରୁ କି କି ଜ୍ଞାନ ପାଇଲ ଆମକୁ ବୁଝାଇ କୁହ ପଚାରିଲେ, ସେମାନଙ୍କ ପାଖରେ ଉତ୍ତର ନଥାଏ କିମ୍ବା ଧର୍ମଗୁରୁମାନେ କହୁଥିବା ପ୍ରବଚନକୁ ଦୋହରାଇ ଦେଉଛନ୍ତି ।

ବିଡମ୍ବନା ହେଉଛି ଭାରତରେ ଦଳିତ ଓ ଶୂଦ୍ରମାନଙ୍କ ଅଧିକାର ପ୍ରାପ୍ତି ପାଇଁ ଯେଉଁ ମହାନ ଗୁଣି ବ୍ୟକ୍ତି ବାବା ସାହେବ ଆମ୍ବେଦକର ସମ୍ବିଧାନ ଲେଖି ଯାଇଛନ୍ତି, ଆଜିର ଯୁଗରେ ମଧ୍ୟ ସେହି ଦଳିତ ଶୂଦ୍ରମାନଙ୍କର ଦାୟାଦମାନେ ବ୍ରାହ୍ମଣବାଦକୁ ସମର୍ଥନ କରି ଆମ୍ବେଦକରଙ୍କୁ ବିରୋଧ କରୁଛନ୍ତି । ସତେ ଯେମିତି ଆମ୍ବେଦକର ସେମାନଙ୍କୁ ସ୍ୱର୍ଗ ଯିବାର ରାସ୍ତା ବନ୍ଦ କରିଦେଇଛନ୍ତି ।

### ଆମ ଧର୍ମକୁ ନଷ୍ଟ କରୁଛି କିଏ ?

ବିଦେଶରେ ଭାରତୀୟମାନଙ୍କୁ ଉଚିତ ସମ୍ମାନ ମିଳୁନାହିଁ ବୋଲି ଶୁଣିବାକୁ ମିଳେ । ଏହାର କାରଣ ଖୋଜିଲେ ତ ଅନେକ ମିଳିବ । କିନ୍ତୁ ଗୋଟିଏ ମୁଖ୍ୟ କାରଣ ହେଉଛି - ଆମର ଧର୍ମ, ବର୍ଣ୍ଣ ଓ ଜାତି ଭେଦଭାବ ରଖୁଥିବା ମାନସିକତା । ବିଦେଶରେ ମଧ୍ୟ ସେମାନେ ସେହିଭଳି ମାନସିକତା ପ୍ରଦର୍ଶନ କରୁଥିବା ବିଚିତ୍ର କଥା ନୁହେଁ । ଯେଉଁ ଦେଶରେ ଦଳିତ ବୋଲାଉଥିବା ତୃଷାର୍ତ୍ତ ମଣିଷକୁ ପାଣି ପିଆଇବାକୁ ଉଚ୍ଚବର୍ଗ ନିଜର ମର୍ଯ୍ୟାଦା ହାନୀ ହେବ ବୋଲି ଭାବୁଛନ୍ତି, ଯେଉଁଠି ଉଚ୍ଚ ବର୍ଗର ଲୋକମାନେ ନିଜର ପିଲାଙ୍କୁ, ଦଳିତ ପିଲାଙ୍କ ସହିତ ସ୍କୁଲରେ ବସିବାକୁ ମନା କରୁଛନ୍ତି, ସେହି ଦେଶର ଲୋକ ଅନ୍ୟଦେଶକୁ ଯାଇ ଅନ୍ୟ ଧର୍ମର ଲୋକସହ ବସି ଖାଦ୍ୟ ଖାଇବାକୁ ଘୃଣା କରିବା ସ୍ୱାଭାବିକ । ସୁଟ ବୁଟ ପିନ୍ଧିଥିବା ଜଣେ ଶିକ୍ଷିତ ବ୍ୟକ୍ତି ସେଠାରେ ପାଇଖାନା ଟାଙ୍କି ସଫା କରୁଥିବା ଗାଡି ଚଳାଉଛି । ସେଭଳି ଲୋକ ଯଦି ଭାରତୀୟ ଲୋକକୁ ଭଦ୍ରତା ଖାତିରରେ ଚା'କପେ ପିଇବାକୁ ଯାଚିବ, ସେ ତୁରନ୍ତ ପଛକୁ ଦୁଇପାଦ ଘୁଞ୍ଚିଯାଇ କହିବ - "No thanks" କାରଣ ତାଙ୍କ ଦୃଷ୍ଟିରେ ସେ ଲୋକଟି ନିଶ୍ଚୟ ଦଳିତ ଓ ଅସ୍ପୃଶ୍ୟ ।

ଏହି ଏକ କାରଣରୁ ଆମ ଦେଶର ଅନେକ ମୂଳ ନିବାସୀ, ଆଦିବାସୀ ଓ ଦଳିତ ଶ୍ରେଣୀର ଲୋକମାନେ ନିଜର ଧର୍ମ ପରିବର୍ତ୍ତନ କରିଦେଉଛନ୍ତି । କାରଣ ସେହି ଧର୍ମରେ ସେମାନଙ୍କର ଆତ୍ମସମ୍ମାନ ହାନୀ ହେବାର ଭୟ ନଥାଏ । ସେତିକିବେଳେ ଆମ ସମାଜର ବଡ଼ ପଣ୍ଡାମାନେ ଗଳା ଫଟାଇ ଚିତ୍କାର କରିବେ "ଗଲା ସବୁ ସରିଗଲା, ଆମ ଧର୍ମକୁ ନଷ୍ଟ କରିବାପାଇଁ ଅନ୍ୟ ଧର୍ମର ଲୋକମାନେ ଆସି ଆମ ଲୋକମାନଙ୍କୁ ଟାଣି ନେଉଛନ୍ତି ।" ଧର୍ମ ପରିବର୍ତ୍ତନର ଅସଲ କାରଣ ଏହାର ଠିକ ବିପରୀତ । ଉଚ୍ଚବର୍ଗର ସର୍ତ୍ତ ହେଉଛି - ଆମରି ଧର୍ମରେ ହିଁ ରୁହ, ଆମରି ପାଦତଳେ ବସ । ଆମରି ସେବା କର । ଆମେ ଖାଇ ସାରିଲେ ଆମରି ଅଇଁଠା ଖଲିରେ ଖାଅ ।  ଆମେ ଖୁସିରେ ଯାହା ଦେବୁ ସେତିକି ହିଁ ନେଇଯାଅ । ପ୍ରତିବାଦ କରନାହିଁ କି ପ୍ରଶ୍ନ କରନାହିଁ । ଧର୍ମଶାସ୍ତ୍ର ବାଣୀ "ସ୍ୱଧର୍ମେ ନିଧନଂ ଶ୍ରେୟଃ ପର ଧର୍ମ ଭୟାବହ" କୁ ମାନିଚଲ ।

## ଶଠ ନେତା ସମାଜର ସୁଧାର ଆଣିବେ କିପରି?

ଆମଦେଶର ଭଣ୍ଡ ସମାଜସେବକ ଲୋକମାନଙ୍କୁ ଲୁଟେଇ ସେମାନଙ୍କର ମଙ୍ଗଳ ଚିନ୍ତକ ନେତା ବନିଯାଅନ୍ତି । ମୁଁ ମନ୍ତ୍ରୀ ହେଲେ ତୁମ ସମାଜର ଉନ୍ନତି ହେବ, ତୁମମାନଙ୍କର ଦୁଃଖ ଦୂର ହୋଇଯିବ ଇତ୍ୟାଦି ବହୁତ ଆଶ୍ୱାସନା ଦିଅନ୍ତି । ଯେଉଁଥିପାଇଁ ସେମାନେ ଭୋଟ ପାଇ ମନ୍ତ୍ରୀ ହୋଇଯା'ନ୍ତି । ଏଭଳି ନେତା ବି ଅଛନ୍ତି ଯେଉଁମାନେ ନିଜକୁ ଦଳିତଙ୍କ ବନ୍ଧୁ ଦେଖେଇ ହେବାପାଇଁ ଜନତାଙ୍କ ଗହଣରେ ଜଣେ ଅଛୁଆଁ ଜାତିର ବ୍ୟକ୍ତିଙ୍କ ହାତରୁ ନିଜ ବେକରେ ଫୁଲମାଳ ପିନ୍ଧି ପାରନ୍ତି, କିନ୍ତୁ ପରେ ସେ ଘରେ ପହଞ୍ଚି ପିନ୍ଧିଥିବା ବସ୍ତ୍ର ସହିତ ସମ୍ପୂର୍ଣ୍ଣ ସ୍ନାନ ନକଲେ ନିଜକୁ ଅଶୁଦ୍ଧ ମାନନ୍ତି । ଏଭଳି ଶଠମନୋବୃତ୍ତିର ନେତା ସମାଜରେ କିଭଳି ସୁଧାର ଆଣିପାରିବେ ତାହା ଚିନ୍ତା କରିବାର କଥା ? ନେତାଙ୍କ କଥାକୁ ବାଦ ଦିଆଯାଉ, ଆମ ଠାକୁର ମନ୍ଦିର ଭିତରକୁ ଅଛୁଆଁ ମଣିଷ ଦର୍ଶନ କିମ୍ବା ପୂଜା କରିବାକୁ ପଶିଗଲେ ଠାକୁର ବି ଅପବିତ୍ର ହୋଇଯାଆନ୍ତି । ସେଥିପାଇଁ ବେଳେ ବେଳେ ଦୁଇ ବର୍ଗର ମଣିଷମାନଙ୍କ ଭିତରେ ରକ୍ତାକ୍ତ ସଂଘର୍ଷ ଘଟୁଥିବା ଦେଖାଯାଉଛି । ଯେଉଁମାନେ ଅତି ଆବଶ୍ୟକୀୟ କାମକରି (ନାଳ ନର୍ଦ୍ଦମା କିମ୍ବା ପାଇଖାନା ସଫା କରୁଥିବା) ଆମର ସେବା

କରୁଛନ୍ତି, ସେହିମାନଙ୍କୁ ଆମେ ଅନାଦର କରିଦେଉଛୁ । ଏହା ସେମାନଙ୍କ ପ୍ରତି କୃତଘ୍ନତା ନୁହେଁ କି ? ପଶୁମାନଙ୍କୁ ଆମେ ପୂଜା କରିପାରୁଛୁ, କୁକୁର, ବିଲେଇକୁ ଆମେ ଘରେ ରଖି କୋଳରେ ବସାଇ, ଗେଲ କରିପାରୁଛୁ, ଅଥଚ ମଣିଷକୁ ପାଖରେ ବସାଇବା ମନା । ଏହା କିଭଳି ମଣିଷ ପଣିଆ ?

### ଦଳିତଙ୍କୁ ନେଇ ବିଭିନ୍ନ ଧର୍ମରେ ଟଣାଓଟରା ଚାଲିଛି

ଭାରତୀୟ ଦଳିତମାନଙ୍କୁ ନେଇ ନିଜର ଭୋଟବ୍ୟାଙ୍କ ବୃଦ୍ଧି କରିବା ଏବଂ ସାମ୍ପ୍ରଦାୟିକ ଭାବନାରେ ନିଜପାଇଁ ବେଶୀ ଅଧିକାର ଦାବି କରିବାକୁ ନିଜର ଗୋଷ୍ଠୀ ସଂଖ୍ୟା ବଢାଇବାର ଚିନ୍ତା ସମସ୍ତଙ୍କୁ ଘାରିଛି । ମୁସଲମାନମାନେ ବେଶୀ ଜୋରଦେଇ ଅଛୁଆଁ ବର୍ଗକୁ ସେମାନଙ୍କ ସମାନ ଅଧିକାର ଦେବା ଆରମ୍ଭ କରିଦେଲେ । ଏହାଦ୍ୱାରା ହିନ୍ଦୁମାନଙ୍କ ଅହଂକୁ ଆଘାତ ଲାଗିଲା । ଅନେକ ବିବାଦ ସୃଷ୍ଟି ହେଲା । ହିଂସା ବଢ଼ିଲା, ରକ୍ତପାତ ବି ହେଲା । ତେଣେ ଶିଖ ସମ୍ପ୍ରଦାୟ ମଧ୍ୟ ଭାବିଲେ ଆମେ କିଆଁ ପଛରେ ରହିବୁ ? ସେମାନେ ମଧ୍ୟ "ଅମୃତଛକାନା" ଆରମ୍ଭ କରିଦେଲେ । ହିନ୍ଦୁ- ଶିଖ ଭିତରେ ଅଛୁଆଁ ଲୋକଙ୍କ ପଇତା ଓହ୍ଲାଇବା ଓ କେଶ କାଟିବାର ପ୍ରଶ୍ନ ଉପରେ ଝଗଡା ହେଲା । ବର୍ତ୍ତମାନ ହିନ୍ଦୁ, ମୁସଲମାନ ଓ ଶିଖ ତିନି ଗୋଷ୍ଠୀ ଅଛୁଆଁ ଦଳିତ ଜାତିର ଲୋକମାନଙ୍କୁ ନିଜ ଆଡକୁ ଟାଣିବାକୁ ଚେଷ୍ଟା କରୁଛନ୍ତି । ଅନ୍ୟପଟେ ଖ୍ରୀଷ୍ଟିୟାନମାନେ ଚୁପଚାପ ନିଜର ପ୍ରଭାବ ବିସ୍ତାର କରି ଚାଲିଛନ୍ତି ।

ଏହାର ମୂଳରେ ରହିଛି - ହିନ୍ଦୁଧର୍ମରେ ରହି ଅପମାନିତ ହେଉଥିବା ଅଛୁଆଁ ମଣିଷର ମାନସିକ ଯନ୍ତ୍ରଣାରୁ ମୁକ୍ତି ପାଇବାର ବ୍ୟଗ୍ରତା । ସେମାନେ କିନ୍ତୁ ବୁଝି ପାରୁନାହାନ୍ତି ଯେ ବେଙ୍ଗ ଗୋଟିଏ କୂଅରୁ ମୁକ୍ତି ପାଇ ଯଦି ଆଉ ଗୋଟିଏ କୂଅକୁ ଡେଇଁପଡ଼ିବ ତା' ଅବସ୍ଥାରେ ବେଶୀ କିଛି ଫରକ ଆସିବନି । ଧର୍ମର ବନ୍ଧନ ସବୁଠାରେ ଏକାଭଳି । ଶୋଷଣ ସବୁଧର୍ମର ମୂଳ ଉଦ୍ଦେଶ୍ୟ । ତେଣୁ ଧର୍ମ ରହିତ ସମାଜରେ ବାସ କଲେ ହିଁ ସ୍ୱାଧିନତାର ସ୍ୱାଦ ମିଳେ ଓ ଆତ୍ମସମ୍ମାନ ବଞ୍ଚି ରହେ ।

## ଉଚ୍ଚ ଜାତିଙ୍କ ପାଇଁ ପ୍ରାୟଶ୍ଚିତ୍ତର ସମୟ ଆସିଛି

ଶୁଦ୍ରମାନେ ମଧ୍ୟ ବୁଝି ପାରିଛନ୍ତି ଯେ ଆମରି ଯୋଗୁ ସବୁ ଧର୍ମରେ ଟଣାଓଟରା ଚାଲିଛି ଏବଂ ଆମକୁ ହିଁ ସମସ୍ତେ ନିଜର ଶିକାର ବୋଲି ଭାବୁଛନ୍ତି । ତେଣୁ ଆମେ ଅଲଗା ନିଜର ଗୋଷ୍ଠୀକୁ ସଙ୍ଗଠିତ ରୂପ ନଦେବା କାହିଁକି ?ଏମିତି ବିଚାରକୁ ସରକାରୀ ପ୍ରଚାରତନ୍ତ୍ର ବଡ଼ ସାହାଯ୍ୟକଲା । ଯାହାଫଳରେ "ଆଦି ଧର୍ମମଣ୍ଡଳ" ନାମକ ସଙ୍ଗଠନଟିଏ ଗଠନ ହୋଇପାରିଲା ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି - ଏହି ସମସ୍ୟାର ପ୍ରକୃତ ସମାଧାନ କଅଣ ?

ଏହାର ଉତ୍ତର ବହୁତ ମହତ୍ତ୍ୱ ପୂର୍ଣ୍ଣ । ସର୍ବ ପ୍ରଥମେ ନିର୍ଣ୍ଣୟ କରିବାକୁ ହେବ ଯେ ସମସ୍ତ ମନୁଷ୍ୟ ସମାନ, କେହି ଜନ୍ମରୁ ଭିନ୍ନ ନୁହେଁ କିମ୍ବା କର୍ମ ବିଭାଜନରୁ ମଧ୍ୟ ଭିନ୍ନ ନୁହେଁ । ଅର୍ଥାତ ଜଣେ ବ୍ୟକ୍ତି ଯେହେତୁ ଗୋଟିଏ ଗରିବ ଅଛୁଆଁ ବ୍ୟକ୍ତି ଘରେ ଜନ୍ମ ଗ୍ରହଣ କରିଛି, ସେ କ'ଣ ଜୀବନସାରା କେବଳ ମଇଳା ହିଁ ସଫାକରିବ? ସେ କ'ଣ ସମାଜର କୌଣସି ବିକାଶ ମୂଳକ କାମ କରିପାରିବ ନାହିଁ ? ଏହା ନିହାତି ଅନ୍ୟାୟ ପ୍ରଥା । ଆମର ପୂର୍ବ ପୁରୁଷ ଏହି ପ୍ରଥା ମାନି ଏହି ଗୋଷ୍ଠୀ ସହିତ ଏଭଳି ଅନ୍ୟାୟପୂର୍ଣ୍ଣ ବ୍ୟବହାର କରିଛନ୍ତି । ସେମାନଙ୍କୁ ନିମ୍ନସ୍ତରର କାମ କରିବାକୁ ବାଧ୍ୟ କରିଛନ୍ତି । କାଳେ ସେମାନେ ଏହି ପ୍ରଥାର ବିରୋଧ କରିବେ ତେଣୁ ପୁନର୍ଜନ୍ମ ଦର୍ଶନ ପ୍ରଚାର କଲେ । ଏହା ତୁମର ପୂର୍ବ ଜନ୍ମର ପାପର ଫଳ, ଏହି ଜନ୍ମରେ ଧୈର୍ଯ୍ୟ ଧରି କାମ କଲେ ଆସନ୍ତା ଜନ୍ମରେ ଉଚ୍ଚ କୁଳରେ ଜନ୍ମ ଗ୍ରହଣ କରିପାରିବ । ସେଇଥିପାଇଁ ଦଳିତମାନେ ନିଜ ଭାଗ୍ୟକୁ ଆଦରି କାହାରିକୁ ବିରୋଧ ନକରି ନିରବରେ ନିଜ କର୍ମ କରି ଚାଲିଛନ୍ତି । ଏହାଦ୍ୱାରା ମାନବ ଭିତରେ ଥିବା ମନବତାବାଦକୁ ସମାପ୍ତ କରି ସେମାନେ ବହୁତ ବଡ଼ ଅନ୍ୟାୟ କରିଛନ୍ତି । ଆଜି ତେଣୁ ପ୍ରାୟଶ୍ଚିତ୍ତର ସମୟ ଆସିଛି । ଉଚ୍ଚ ବର୍ଗର ଲୋକମାନେ ମୁକ୍ତ ମନରେ ସେମାନଙ୍କ ସେବା ଓ ଅବଦାନକୁ ଉଚିତ ସମ୍ମାନ ଦିଅନ୍ତୁ ।

## ଦଳିତ ଶ୍ରମିକଙ୍କୁ ଉଚିତ ସମ୍ମାନ ଓ ପାଉଣା ଦିଅ

ଏହା ସହିତ ଆଉ ଗୋଟିଏ ସମସ୍ୟା ଜନ୍ମ ନେଇଛି - ବର୍ତ୍ତମାନ ଲୋକମାନେ ନିଜର ମୌଳିକ ଓ କୌଳିକ ବୃତ୍ତିରୁ ଦୂରେଇ ଯିବାକୁ ଚାହୁଁଛନ୍ତି ।

କାରଣ ବିଭିନ୍ନ ପ୍ରଦେଶରେ ବିଭିନ୍ନ କୌଳିକ ବୃତ୍ତିର ଲୋକଙ୍କୁ ଛୋଟ ଜାତି ବୋଲି ବ୍ୟବହାର କରାଯାଉଛି । ଏହାଦ୍ୱାରା ଦେଶର ବିକାଶ ପ୍ରକ୍ରିୟାରେ ବାଧା ସୃଷ୍ଟି ହେଉଛି । ନିମ୍ନ ଜାତିକୁ ଦୂରେଇ ରଖିବା ଅପେକ୍ଷା ସେମାନଙ୍କୁ ନିକଟର କରି, ସେମାନଙ୍କ ହାତରୁ ପାଣି ପିଇ, ସେମାନଙ୍କୁ ଉଚିତ ସମ୍ମାନଦେଇ, କାନ୍ଧରେ କାନ୍ଧ ମିଳାଇ ଚାଲିବା ହେଉଛି ଆଜିର ଆବଶ୍ୟକ ପଦକ୍ଷେପ ।

ଗାଆଁ ଗହଳିରେ ଦଳିତ ଶ୍ରମିକଙ୍କ ଅଧିକାର ପାଇଁ ପ୍ରଚାର ଆରମ୍ଭ ହେବାରୁ, କେତେକ ସ୍ୱାର୍ଥାନ୍ୱେଷୀ ନେତା ଲୋକ କୃଷକମାନଙ୍କୁ ପ୍ରବର୍ତ୍ତାଇଲେ ଯେ, ଦେଖ ଶ୍ରମିକମାନଙ୍କୁ ଏହିମାନେ ମୁଣ୍ଡ ଉପରକୁ ଚଢ଼ାଇବାକୁ ଚେଷ୍ଟା କରୁଛନ୍ତି । ଏମିତି ହେଲେ ତୁମ ଜମିରେ କାମ କରିବାକୁ ଶ୍ରମିକ ମିଳିବେନାହିଁ । ଏହା ଶୁଣି କୃଷକମାନେ ଦଳିତଙ୍କ ଉପରେ ବିଭିନ୍ନ ଆକାରରେ ଅତ୍ୟାଚାର କରିବା ଆରମ୍ଭ କରିଦେଲେ । କୃଷକମାନେ ବୁଝିବା ଉଚିତ ଯେ ଏହି ଦଳିତ ଶ୍ରମିକମାନଙ୍କୁ ବାଦ ଦେଇ ସେମାନଙ୍କ ଉନ୍ନତି ଅସମ୍ଭବ । ସେମାନଙ୍କୁ ଉଚିତ ସମ୍ମାନ ଓ ଉଚିତ ପ୍ରେରଣା ଦେଲେ ହିଁ, ସେମାନେ ତୁମ ପାଇଁ ଉଚିତ ପରିଶ୍ରମ କରିପାରିବେ ।

## ଦଳିତ ବ୍ୟକ୍ତିଙ୍କୁ କୃତଜ୍ଞତା ଜଣାଇ ଶିଖ

ଉଚ୍ଚବର୍ଗର ଲୋକମାନେ ଯୁକ୍ତି ଦର୍ଶାନ୍ତି ଯେ, ନୀଚ୍ଚବର୍ଗର ଲୋକମାନେ ଯେହେତୁ ମଇଳା ସଫା କରୁଛନ୍ତି, ତେଣୁ ସେମାନେ ଅସନା ଲୋକ । ଏହା ଆଦୌ ଠିକ କଥା ନୁହେଁ । ଅସଲ କଥା ହେଉଛି- ସେମାନେ ଗରିବ । ଗରିବି ଦୋଷ ନିବାରଣ କଲେ ସେମାନେ ମଧ୍ୟ ତୁମମାନଙ୍କ ଭଳି ସଫା ସୁତରା ରହିପାରିବେ । ଗୋଟିଏ ଉଚ୍ଚବର୍ଗର ପରିବାର ଭିତରେ ମାଆ ଓ ଭଉଣୀମାନେ ଛୋଟ ପିଲାଙ୍କ ମଇଳା ସଫା କରନ୍ତି । ଏପରିକି ଘରେ ଅସୁସ୍ଥ ଥିବା ବୟସ୍କ ଲୋକମାନଙ୍କର ମଧ୍ୟ ମଇଳା ସଫା କରନ୍ତି । ଆମେ ସେମାନଙ୍କୁ ତ ଘୃଣା କରୁନାହୁଁ ବରଂ କୃତଜ୍ଞତାରେ ମଥା ନତକରି ସମ୍ମାନ ଓ ଭକ୍ତି କରିଥାଉ । ଅନ୍ୟ ପକ୍ଷରେ ଯେଉଁ ବ୍ୟକ୍ତିର ଆମ ପରିବାର ପ୍ରତି କୌଣସି ସମ୍ବନ୍ଧ ନାହିଁ, ସେ ଯଦି ଖୁସିରେ ଆମ ସମସ୍ତଙ୍କର ମଳକୁ ସଫା କରିଦେଉଛି ତ ତାକୁ ଆମେ ଘୃଣା କରିବାଟା କେତେଦୂର ନ୍ୟାୟ ସଙ୍ଗତ ?

ଆମର ଆଲିଶାନ ବଙ୍ଗଳାରୁ ନିୟମିତ ଭାବେ ମଇଳାତକ ସଫା ନହେଲେ ତ ଆମର ଅବସ୍ଥା ଢିଲା ହୋଇଯିବ ।

ମଣିଷ ଯେତେ ପ୍ରଗତି କଲେ ମଧ୍ୟ ନିଜ ଦେହର ମଳ ମୂତ୍ର ତ୍ୟାଗ ପ୍ରକ୍ରିୟାକୁ ତ ବନ୍ଦ କରି ପାରିବନାହିଁ । ଗାଁ' ଗହଳରେ ସିନା ଲୋକମାନେ ମଳ ମୂତ୍ର ତ୍ୟାଗ କରିବା ପାଇଁ ବିସ୍ତିର୍ଣ୍ଣ ଜାଗା ପାଇଯା'ନ୍ତି । ହେଲେ ସହରରେ କାହିଁପାଇବେ ? ସେଥିପାଇଁ ନିଜ ଘର ଭିତରେ ହିଁ ପାଇଖାନା ତିଆରି କରନ୍ତି । ଆଜିକାଲି ଅବଶ୍ୟ ସହରମାନଙ୍କରେ ଆଧୁନିକ ପ୍ରଣାଳୀରେ ପାଇଖାନା ତିଆରି ହେଉଛି । ମଳ ମୂତ୍ର ସହଜରେ ନିଷ୍କାସନ ହେବା ପାଇଁ ଭୂମିତଳେ ପାଇପ ଲଗାଯାଉଛି । ତଥାପି ସେହି ପାଇପ ଗୁଡିକ ସମୟ ସମୟରେ ଜାମ (Block) ହୋଇଯାଉଛି । ସେଗୁଡିକୁ ସଫା କରିବାପାଇଁ ମଣିଷମାନଙ୍କୁ ହିଁ ବ୍ୟବହାର କରାଯାଉଛି । ସେହି ମଣିଷମାନେ କିଏ ? ଦଳିତ ଶ୍ରେଣୀର ଲୋକମାନେ ହିଁ ସେହିସବୁ କାମ କରନ୍ତି । ସେମାନେ ଯଦି ସେହିକାମ ନକରିବେ ତେବେ ଉଚ୍ଚଶ୍ରେଣୀର ଧୋବଧାଉଳିଆ ବାବୁମାନଙ୍କ ଘର ଓ ରାସ୍ତାଘାଟର ଅବସ୍ଥା କ'ଣ ହେବ ? ଦୁଃଖର କଥାଯେ ସେମାନେ ଏତେବଡ଼ ମୂଲ୍ୟବାନ କାମ କରୁଥିବା ସତ୍ତ୍ୱେ, ଏହିସବୁ କାମପାଇଁ ବହୁତ କମ ପାରିଶ୍ରମିକ ମୂଲ୍ୟ ଦିଆଯାଏ, ତା'ସହିତ ସେମାନଙ୍କୁ ହୀନଦୃଷ୍ଟିରେ ଦେଖାଯାଏ । ସେମାନଙ୍କୁ ଉଚିତ ପାଉଣା ଦେବା ସହ ଖୋଲା ମନରେ ଧନ୍ୟବାଦଟିଏ ମଧ୍ୟ ଦେବା ଉଚିତ ।

*****<>*****

"ହେତୁବାଦ କୌଣସି ଧର୍ମ ନୁହେଁ, ଏହା ଏକ ଜୀବନ ପଦ୍ଧତି, ଯାହା ଦ୍ୱାରା ମନରୁ ଭିତ୍ତିହୀନ ବିଶ୍ୱାସ ଓ ଅହେତୁକ ଭୟ ସବୁ ଦୂର ହୁଏ । ମନରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଜାତ ହୁଏ ଏବଂ ମଣିଷର ଆତ୍ମବିଶ୍ୱାସ ବୃଦ୍ଧି ହୁଏ । ଆତ୍ମବିଶ୍ୱାସ ହେଉଛି ଯେ କୌଣସି କର୍ମରେ ସଫଳତା ପାଇବାର ଅସଲ ଶକ୍ତି ।"

# ଭାଗ୍ୟବାଦୀ ମାନସିକତା

ଭାରତରେ ଏମିତି ତ ଅନେକ ପ୍ରକାର କୁସଂସ୍କାର ଓ ଭିତ୍ତିହୀନ ବିଶ୍ୱାସ ପ୍ରଚଳିତ ଅଛି । ତନ୍ମଧ୍ୟରେ ଭାଗ୍ୟବାଦୀ ମାନସିକତା ମଧ୍ୟ ବହୁଳଭାବେ ପ୍ରଚଳିତ । 'କପାଳ ଲିଖନ କେ କରିବ ଆନ' 'ଭାଗ୍ୟରେ ଯାହା ଲେଖାଅଛି ତାହା ହିଁ ହେବ' 'ଭାଗ୍ୟ ଆଗରେ ସବୁକିଛି ତୁଚ୍ଛ' ଇତ୍ୟାଦି ପ୍ରଚଳିତ ପ୍ରବାଦଗୁଡ଼ିକରୁ କ'ଣ ସବୁ ପ୍ରମାଣିତ ହେଉଛି ଆସନ୍ତୁ ଦେଖିବା ? ଭାଗ୍ୟ ନାମକ ଏଭଳି ଗୋଟିଏ ଅତିମହାନ ଶକ୍ତିଅଛି ଯାହାକୁ ଅନ୍ୟ କୌଣସିଶକ୍ତି ଏପରିକି ସ୍ୱୟଂ ଭଗବାନ ମଧ୍ୟ ବଦଳାଇ ପରିବେନାହିଁ ବୋଲି କୁହାଯାଏ । ଭାଗ୍ୟରେ ଯାହା ଲେଖାଅଛି ତାହା ଯଦି ଘଟିବା ସୁନିଶ୍ଚିତ ତେବେ ତାକୁ ଲେଖେ କିଏ ? ଭଗବାନ ଯଦି ଲେଖୁଛନ୍ତି, ତା'ହାଲେ ସେ ପୁଣି ପରିବର୍ତ୍ତନ କରିପାରିବେ ନାହିଁ କାହିଁକି ? ଭାଗ୍ୟ ନିର୍ଦ୍ଧାରିତ କରୁଥିବା ଶକ୍ତି ନିଶ୍ଚୟ ତଥାକଥିତ ଭଗବାନ ଠାରୁ ବି ବଡ଼ । ଏହା ହିଁ ତ ପ୍ରମାଣିତ ହେଉଛି ।

କୁହାଯାଏ – "ତୁମେ ଯେତେଯାହା ପରିଶ୍ରମ କର ପଛେ ଭାଗ୍ୟରେ ନଥିଲେ ସୁଫଳ କେବେ ବି ପାଇବନାହିଁ । ଅଥଚ ଭାଗ୍ୟରେ ଥିଲେ ତୁମେ ପରିଶ୍ରମ ନକରି କିମ୍ବା କମ ପରିଶ୍ରମ କରି ମଧ୍ୟ ସୁଫଳ ପାଇବ । ସେହିମାନେ ପୁଣି କହୁଛନ୍ତି - କର୍ମ ନକଲେ ଫଳ ମିଳିବନି । ଏଭଳି ବିରୋଧାଭାସ କାହିଁକି ? ତେଣୁ ବୈଜ୍ଞାନିକ ଦୃଷ୍ଟିକୋଣ ରଖୁଥିବା କୌଣସି ବୁଦ୍ଧିମାନ ବ୍ୟକ୍ତି ଉପରୋକ୍ତ ଭାଗ୍ୟବାଦୀ ମନୁଷ୍ୟମାନଙ୍କ ମତକୁ ଉଚିତ ବୋଲି କେବେ ବି ସମର୍ଥନ କରିପାରିବ ନାହିଁ । ମଣିଷର କର୍ମମୟ ଜୀବନରେ ସଫଳ ବା ବିଫଳ ସହିତ ସୌଭାଗ୍ୟ ଓ ଦୁର୍ଭାଗ୍ୟକୁ ଯୋଡି ଯେଉଁ ରହସ୍ୟମୟ ମନ୍ତବ୍ୟ ଦିଆଯାଏ, ତାହା କେବଳ କପୋଳକଳ୍ପିତ ଭିତ୍ତିହୀନ ବିଶ୍ୱାସ ବ୍ୟତିତ ଅନ୍ୟ କିଛିନୁହେଁ ।

## ଭାଗ୍ୟ ବିନା ଗତିନାହିଁର ମିଥ୍ୟା ବିଶ୍ୱାସ

ଭାଗ୍ୟବାଦୀ ବ୍ୟକ୍ତି ପ୍ରତ୍ୟେକ କଥାକୁ ବିନା ତର୍କରେ ସ୍ୱୀକାର କରିଯାଏ । ତାହା ଫଳରେ ସେ ନିଜକୁ ମଧ୍ୟ ସେହି ଧାରାରେ ହିଁ ଅନୁପ୍ରାଣିତ କରିଥାଏ । ଦୁନିଆରେ ମଣିଷ ପାଇଁ ଦୁଇଟି ରାସ୍ତା ଅଛି । ପ୍ରଥମଟି ହେଲା - ତୁମ ଜୀବନ ଯଦି

ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇଛି, ତୁମେ ନିଜର ଜ୍ଞାନ ଓ ଶକ୍ତି ପ୍ରୟୋଗ କରି ପରିସ୍ଥିତିକୁ ଅନୁକୂଳ ଦିଗରେ ପରିବର୍ତ୍ତନ କରିବାକୁ ଚେଷ୍ଟାକର ।

ଦ୍ୱିତୀୟ ରାସ୍ତା - 'ପରିସ୍ଥିତି ଆଗରେ ଆତ୍ମସମର୍ପଣ' ଅର୍ଥାତ କୌଣସି ପ୍ରଚେଷ୍ଟା ନକରି ପ୍ରତିକୂଳ ପରିସ୍ଥିତିକୁ ସହ୍ୟକରି କଷ୍ଟମୟ ଜୀବନ ବିତାଇଦିଅ । ଆମଦେଶର ଅଧିକାଂଶ ଲୋକ ଦ୍ୱିତୀୟ ରାସ୍ତାରେ ହିଁ ଚାଲିଥାନ୍ତି । ଯେତେ କଷ୍ଟ ହେଉପଛେ ଭାଗ୍ୟର ଭରସାରେ ହିଁ ବଞ୍ଚିବାକୁ ପ୍ରୟାସ କରିଥାନ୍ତି । ଗରିବ ବ୍ୟକ୍ତିଟି ଭାବୁଛି - ଭଗବାନ ଆମକୁ ଯାହା ଦେଇଛନ୍ତି ସେତିକିରେ ହିଁ ଆମେ ଖୁସିରେ ଅଛୁ । ଆମଭାଗ୍ୟରେ ଥିଲେ, ଦିନେ ନା ଦିନେ ଆମକୁ ସୁଖ ମିଳିବ । କେତେଜଣ ଭାବନ୍ତି, ଏହା ଆମର ପୂର୍ବ ଜନ୍ମର କର୍ମର ଫଳ । ଆଉ କେତେଲୋକ ନିଜର ଦୁର୍ଦ୍ଦଶା ପାଇଁ ଗ୍ରହଦୋଷ ଅଛି ବୋଲି ଭାବନ୍ତି । ସେମାନେ କୌଣସି ତାନ୍ତ୍ରିକ ବା ଜ୍ୟୋତିଷଙ୍କ ପ୍ରରୋଚନାରେ ଗ୍ରହଶାନ୍ତି ପାଇଁ ବିଭିନ୍ନ କର୍ମକାଣ୍ଡ କରାଇଥା'ନ୍ତି । ନିଜର ଦୁର୍ଦ୍ଦଶାର ଅସଲ କାରଣ ଖୋଜି, ଦୋଷ ଦୂର କରିବାକୁ ପ୍ରୟାସ କରନ୍ତିନାହିଁ । ଲୋକମାନଙ୍କର ଏହି ମାନସିକତା ଯୋଗୁ ସମାଜରେ ଗୋଟିଏ ପରଜୀବୀ ଗୋଷ୍ଠୀ ବିନା ପରିଶ୍ରମରେ ସବୁକିଛି ସୁଖ ସାଧନ ହାସଲ କରି ମଉଜ କରୁଛନ୍ତି । ଭିକାରୀଙ୍କ ସଂଖ୍ୟା ଭାରତରେ ସବୁଠାରୁ ଅଧିକ । ଲୋକମାନଙ୍କ ମନରେ ଗୋଟିଏ ଭୁଲ ବିଶ୍ୱାସ ରହିଛି ଯେ, ଭିକ୍ଷାଦାନ ଦ୍ୱାରା ପୁଣ୍ୟ ଅର୍ଜନ ହୁଏ ଏବଂ ମୃତ୍ୟୁ ପରେ ସ୍ୱର୍ଗରେ ସ୍ଥାନ ମିଳେ । ଏହି ମାନସିକତା ଯୋଗୁ ଅନେକ ସୁସ୍ଥଥିବା କର୍ମଭୀରୁ, ଠକ ପ୍ରକୃତିର ବ୍ୟକ୍ତି ମଧ କେବଳ ଭିକ୍ଷାବୃତ୍ତି କରି ସରଳ ବିଶ୍ୱାସୀ ଲୋକମାନଙ୍କର ମାନସିକ ସ୍ତରରେ ଭାବନାତ୍ମକ ଶୋଷଣ କରିଥାନ୍ତି ।

## ପୂର୍ବକାଳ ବନାମ ବର୍ତ୍ତମାନକାଳ

ଭାରତୀୟ ସମାଜରେ ଆଜି ମଧ ଗୋଟିଏ ଭ୍ରାନ୍ତ ଧାରଣା ରହିଛି ଯେ ପୂର୍ବକାଳରେ ସବୁକିଛି ଭଲଥିଲା । କିନ୍ତୁ ସତକଥା ହେଉଛି – "ଆଜିର ଯୁଗରେ ମଣିଷକୁ ଯେଉଁଭଳି ସୁଖ ସମୃଦ୍ଧି ପ୍ରାପ୍ତ ହୋଇଛି ବିଗତ କୌଣସି ଯୁଗରେ (ତଥାକଥିତ ସତ୍ୟଯୁଗ, ଦ୍ୱାପର ଯୁଗ ଓ ତ୍ରେତୟା ଯୁଗ) ଏସବୁ ଉପଲବ୍ଧ ନଥିଲା ।" ମଣିଷର ଆୟୁଷ ସମ୍ପର୍କରେ ଆମର ଧାରଣା ରହିଛି ଯେ, ଭଗବାନ ହିଁ ଆମର

ଆୟୁଷ ନିର୍ଦ୍ଧାରଣ କରିଥାନ୍ତି । ସେଥିପାଇଁ କହନ୍ତି - "ଯାହାର, ଯେମିତି, ଯେଉଁଠି ମୃତ୍ୟୁ ଲେଖା ଅଛି ସେ, ସେମିତି, ସେଇଠି ମୃତ୍ୟୁ ବରଣ କରିବ ।"

ଅନ୍ୟ ଦେଶମାନଙ୍କରେ ମଣିଷ ଶରୀର ଉପରେ ଗବେଷଣା କରି ବିଭିନ୍ନ ଚିକିତ୍ସା ପଦ୍ଧତି ଦ୍ୱାରା ବିଭିନ୍ନ ରୋଗମାନଙ୍କୁ ନିୟନ୍ତ୍ରଣ କରି ମଣିଷର ଆୟୁଷକୁ ବଢ଼ିବାରେ ଲାଗିଛନ୍ତି । ବର୍ତ୍ତମାନ କାଳରେ ବିଭିନ୍ନ ଭୟଙ୍କର ମହାମାରୀ ରୋଗର କାରଣ ଖୋଜି ଉପଯୁକ୍ତ ଚିକିତ୍ସା କରି ମନୁଷ୍ୟମାନଙ୍କୁ ରୋଗମୁକ୍ତ କରାଯାଇ ପାରୁଛି । ଏପରିକି କେତେକ ରୋଗକୁ ସମୂଳେ ନଷ୍ଟ କରାଯାଇ ପାରିଛି କିମ୍ବା ତା'ର ପ୍ରଭାବକୁ କମ କରାଯାଇ ପାରିଛି । ପରିତାପର ବିଷୟ ହେଉଛି ଯେ, ଆଖିଆଗରେ ଚିକିତ୍ସା ବିଜ୍ଞାନର ପରାକାଷ୍ଠା ଓ ସଫଳତା ଦେଖି ଶୁଣି ମଧ୍ୟ ଅଧିକାଂଶ ମଣିଷ ବିଶ୍ୱାସ କରନ୍ତି - "ରୋଗ, ବ୍ୟାଧି ଆଦି ଈଶ୍ୱର ହିଁ ଆମ ଭାଗ୍ୟରେ ଲେଖିଛନ୍ତି ତେଣୁ ସେ ଚାହିଁଲେ ହିଁ ଠିକ ହେବ । ମଣିଷ ତ ନିମିତ୍ତମାତ୍ର ।" ଏହା ହେଉଛି ଏକ ଅବୈଜ୍ଞାନିକ ଚିନ୍ତାଧାରା ।

## ବିଜ୍ଞାନ ଓ ବୈଷୟିକ ଜ୍ଞାନକୌଶଳର ପ୍ରଭାବ

ଆଜି ଏହି ଦୁନିଆରେ ମଣିଷ ପାଇଁ ଯେଉଁ ସୁଖ ସୁବିଧା ସବୁ ଉପଲବ୍ଧ ଅଛି ତାହା କେବଳ ବିଜ୍ଞାନ ଏବଂ ବୈଷୟିକ ଜ୍ଞାନକୌଶଳ ଯୋଗୁ ସମ୍ଭବହୋଇଛି । ଅନ୍ୟଥା ଆମ ଧର୍ମଗ୍ରନ୍ଥମାନଙ୍କରେ ଯେଉଁ କାଳ୍ପନିକ ସ୍ୱର୍ଗରେ ମୋକ୍ଷ ପ୍ରାପ୍ତ କରି ସୁଖ ଭୋଗ କରିବାର ପ୍ରଲୋଭନ ଦିଆଯାଇଛି, ଏହାର କାରଣ ହେଉଛି - ସେ ଯୁଗରେ ମଣିଷ ଆଦୌ ସୁଖରେ ରହିନଥିଲା । ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ଓ ଶାରୀରିକ ରୋଗ ବ୍ୟାଧି ଯୋଗୁ ମଣିଷ ସର୍ବଦା ଦୁଃଖ କଷ୍ଟରେ ଜୀବନ ବ୍ୟତୀତ କରୁଥିଲା । ତେଣୁ ଶୀଘ୍ର ଏହି ଦୁଃଖ ଜଞ୍ଜାଳରୁ ମୁକ୍ତିପାଇବାର ଉପାୟ ଖୋଜୁଥିଲା । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ହିଁ ମଣିଷ ପାଇଁ ବିଭିନ୍ନ ଭୌତିକ ସୁଖ ଭୋଗର ସୁଯୋଗ ଦେଇଛି । ଏହାର ବିକାଶ ଯୋଗୁ ମଣିଷର ଦେଖିବା, ଶୁଣିବା, ଗତିକରିବା ଆଦିରେ ଅଭୂତପୂର୍ବ ଭାବେ ବେଗ ବୃଦ୍ଧି ପାଇଛି । ବିଜୁଳି ଏବଂ ସୂଚନାତନ୍ତ୍ରର ଉଦ୍ଭାବନ ହୋଇଥିବାରୁ ଦୁନିଆର ଗୋଟିଏ କୋଣରୁ ଆଉ ଗୋଟିଏ କୋଣ ପର୍ଯ୍ୟନ୍ତ ସମ୍ପର୍କ ରଖିବା ସମ୍ଭବ ହୋଇପାରିଛି । ଏପରିକି ପୃଥିବୀ ବାହାରେ ଥିବା ବିଭିନ୍ନ ଗ୍ରହ,

ଉପଗ୍ରହମାନଙ୍କ ବିଷୟରେ ବୈଜ୍ଞାନିକମାନେ ନୂଆ ନୂଆ ଜ୍ଞାନପ୍ରାପ୍ତ କରିପାରିଛନ୍ତି । ବର୍ତ୍ତମାନ ଯଦି ଏହି ଯୁଗରରେ ମଧ୍ୟ କୌଣସି ମଣିଷ ଦୁଃଖରେ ଅଛି ବୋଲି ଭାବୁଛି ତାହେଲେ ତା'ର ଅସଲ କାରଣ ସେ ଜାଣି ପାରୁନି । ସେ ନିଜର ଅପାରଗତା ଓ ଅଳସୁଆ ଗୁଣକୁ ସେ ସୁଧାରିବାକୁ ଚାହୁଁନି । ଆଦୌ କାମ ନକରି (ସାଧୁ-ସନ୍ନ୍ୟାସୀଙ୍କ ଭଳି) କିମ୍ବା କମ କାମ କରି (କାମଚୋର ତଥା ଶ୍ରମକାତର ଶ୍ରମିକ ଭଳି) ସବୁ ସୁଖ ପାଇବାର ଲାଳସା ରଖିଥିବା ଲୋକମାନେ ହିଁ ଦୁଃଖ ପାଉଥିବା କଥା କହନ୍ତି । ଯିଏ ମାନସିକ ଓ ଶାରୀରିକ ଭାବେ ଉଚିତ କର୍ମ କରେ, ସେ କେବେ ସାରା ଜୀବନ କେବଳ ଦୁଃଖରେ ରହେ ନାହିଁ ।

### ଭାଗ୍ୟ ଓ ପ୍ରାରବ୍ଧ ନାମରେ ଭିତ୍ତିହୀନ ବିଶ୍ୱାସର ପ୍ରଚାର

ଭାଗ୍ୟବାଦ ଭଳି ଅହେତୁକବିଶ୍ୱାସ ଯୋଗୁ ଶାସକଗୋଷ୍ଠୀଙ୍କ ଦ୍ୱାରା ଜନତାଙ୍କୁ ଶୋଷଣ କରିବା ସହଜ ହୋଇପଡିଲା । ଧର୍ମନାମରେ ଯେଉଁ ଭଳି ଅପପ୍ରଚାର ହେଉଛି ତା'ଯୋଗୁ ଶାସକମାନଙ୍କ କୁଶାସନ ବିରୋଧରେ କେହି ମଧ୍ୟ ପ୍ରତିବାଦର ସ୍ୱର ଉଠାଇ ପାରୁନାହାନ୍ତି ।

ଆଜି ମଧ୍ୟ ବିଭିନ୍ନ ପତ୍ର ପତ୍ରିକାରେ ରାଶିଫଳ ପ୍ରକାଶ କରି ଲୋକମାନଙ୍କ ମୁଣ୍ଡରେ ଭିତିହୀନ ବିଶ୍ୱାସକୁ ଦୃଢ କରାଯାଉଛି । ଏଇଠି ପ୍ରଶ୍ନ ଉଠୁଛି - ପୃଥିବୀର ସମସ୍ତ ମାନବଜାତି କ'ଣ କେବଳ ବାରଗୋଟି ରାଶିରେ ବିଭକ୍ତ ହୋଇ ନିଜ ନିଜର ଭାଗ୍ୟଫଳ ଭୋଗ କରୁଛନ୍ତି ? ଶାସକ ଦଳର ସବୁ ନେତାଙ୍କ ଜାତକରେ କ'ଣ ରାଜଭୋଗ କରିବା କଥା ଲେଖାଥାଏ ? ସେମାନେ ତାଙ୍କର ପ୍ରାରବ୍ଧର ଫଳ ଭୋଗ କରିବା ପାଇଁ ଯଦି ଜନ୍ମ ହୋଇଛନ୍ତି, ତେବେ ପ୍ରତିଥର ନେତାମାନେ ଇଲେକ୍ସନ ପୂର୍ବରୁ ଜ୍ୟୋତିଷ ବା ତାନ୍ତ୍ରିକମାନଙ୍କ ପାଖକୁ ଯାଇ ଜିତିବାପାଇଁ ପୂଜା ପାଠ କରାଉଛନ୍ତି କାହିଁକି ?

### କପାଳ ଲିଖନ ମୁଁ କରିବି ଆନ

ଯଦିଓ ସମସ୍ତେ କହୁଛନ୍ତି - "କପାଳ ଲିଖନ କେ କରିବ ଆନ ?" ତଥାପି ସାଧୁ, ସନ୍ଥ, ବାବା, ଜ୍ୟୋତିଷ ଓ ତାନ୍ତ୍ରିକମାନେ ଦାବି କରୁଛନ୍ତି - "କାହାରି ମଧ୍ୟ ଭାଗ୍ୟକୁ ସେ ନିଜର ଦୈବୀଶକ୍ତି ବଳରେ ପରିବର୍ତ୍ତନ କରିଦେଇ ପାରିବେ ।

"ଅର୍ଥାତ ଭଗବାନଙ୍କ ଦ୍ୱାରା କପାଳ ଲିଖନ ମୁଁ କରିଦେବି ଆନ" ଭକ୍ତ କିଛି କରିବା ଦରକାର ନାହିଁ ସେ କେବଳ ପୂଜା ପାଠର ଖର୍ଚ୍ଚ ବହନ କରିପାରିଲେ, ଏହା ସମ୍ଭବ ହୋଇଯିବ ।"

ବହୁ ଉଚ୍ଚଶିକ୍ଷିତ ଲୋକମାନେ ମଧ୍ୟ ଟିକିଏ ବି ନିଜର କାଣ୍ଡଜ୍ଞାନର ପ୍ରୟୋଗ କରି ଭାବୁନାହାନ୍ତି - "ବିଧି ନିର୍ଦ୍ଧାରିତ ପରିଣାମକୁ ସାମାନ୍ୟ ମାନବ କିପରି ପରିବର୍ତ୍ତନ କରିପାରିବାର ଦାବି କରୁଛି ?" ସେ କାହିଁକି ଜାଣି ପାରୁନି ଯେ ମୁଁ ସତରେ ଠକି ହେବାକୁ ଯାଉଛି ?

ଅସଲ ରହସ୍ୟ ହେଉଛି - କାହାରି ଭାଗ୍ୟରେ କେହି କିଛି ନିର୍ଦ୍ଧାରଣ କରିନଥାନ୍ତି ତେଣୁ ପଣ୍ଡିତମାନେ ନିଜ ମନରୁ ଯାହା କହି ଭକ୍ତଙ୍କ ମନରେ ଭରିଦିଅନ୍ତି ତାହାକୁ ଧର୍ମଭୀରୁ ଲୋକମାନେ ସହଜରେ ବିଶ୍ୱାସ କରିଯାନ୍ତି । ଦ୍ୱିତୀୟରେ ଭବିଷ୍ୟତରେ ଭଲଫଳ ମିଳିବାର ଏକ ଆଶ୍ୱାସନା ନେଇ କାମ କରନ୍ତି । କାକତାଳୀୟ ନ୍ୟାୟରେ ସଫଳ ହୋଇଗଲେ ପଣ୍ଡିତଙ୍କ ଜୟଗାନ ହୁଏ, ବିଫଳ ହେଲେ ପୂର୍ବଜନ୍ମର ପ୍ରାରବ୍ଧର ଫଳ ଭାବି ଚୁପ ରହିଯାଆନ୍ତି ।

*****<>*****

"କେହି ନିଜର ଧର୍ମ ପରିବର୍ତ୍ତନ କରି ହେତୁବାଦୀ ବା ନାସ୍ତିକ ହୁଅନ୍ତି ନାହିଁ । ସେମାନେ ଯେତେବେଳେ ନିଜର ତର୍କବୁଦ୍ଧି, ବୈଜ୍ଞାନିକ ଦୃଷ୍ଟିକୋଣ ଓ ଅନୁଭବରୁ ବୁଝି ପାରନ୍ତି ଯେ ତଥାକଥିତ ଈଶ୍ୱର ବିଷୟରେ ସେମାନଙ୍କୁ ଅନେକ ଭୁଲତଥ୍ୟ ଦିଆହୋଇଛି, ସେତେବେଳେ ସେମାନେ ହେତୁବାଦ ଓ ମାନବବାଦକୁ ସମର୍ଥନକରନ୍ତି ।"

# ଭଗବାନ ବନାମ ମାନବ

ସାରା ଦୁନିଆର ମଣିଷମାନେ ଯଦି ଏହି ଧରାରେ ବାସ କରୁଥିବା ମାନବ ଓ ମାନବୀୟ ସମସ୍ୟା ଉପରେ ବେଶୀ ଚର୍ଚ୍ଚା ନକରି, ଈଶ୍ୱର ବା ଭଗବାନ ନାମକ ଏକ କାଳ୍ପନିକ ଶକ୍ତି ଉପରେ ବେଶୀ ଧ୍ୟାନ କେନ୍ଦ୍ରିତ କରିବେ ତା'ହେଲେ ଆମେ କ'ଣ କହିବା ? ଯାହାର ଅସ୍ତିତ୍ୱ ଆଜି ମଧ୍ୟ ପ୍ରମାଣିତ ହୋଇପାରିନି, ତାହା ପାଇଁ କେତେ ଯେ ବାଦ ବିବାଦ, ଯୁକ୍ତି ତର୍କ, ହିଂସା ଓ ଯୁଦ୍ଧ ଚାଲିଛି ତା'ର ହିସାବ ନାହିଁ । ପ୍ରକୃତରେ ମାନବ ଯେତେବେଳେ ନିଜ ଆଗରେ ଉପୁଜିଥିବା ଜୀବନର ସମସ୍ୟାକୁ ଠିକ ଭାବେ ବୁଝି ପାରେନାହିଁ କିମ୍ବା ତା'ର ସମାଧାନ କରିବାକୁ ନିଜକୁ ଅକ୍ଷମ ଅନୁଭବ କରେ ସେତିକିବେଳେ ସେ ତଥାକଥିତ କାଳ୍ପନିକ ଐଶ୍ୱରୀୟ ଶକ୍ତି ଆଗରେ ନତମସ୍ତକ ହୋଇ ବସିଯାଏ । ସୁଅ ମୁହଁର ପତ୍ର ଭଳି ସବୁକିଛି ଠାକୁରଙ୍କ ଇଚ୍ଛା ଭାବି ହାତ ଟେକି ରହିଯାଏ । ଏହି ନୈରାଶ୍ୟବାଦ ଓ ଭିତିହୀନ ବିଶ୍ୱାସକୁ ଧର୍ମଗୁରୁମାନେ କହନ୍ତି - "ଭଗବାନଙ୍କ ପ୍ରତି ଭକ୍ତି ଓ ସମର୍ପଣ ଭାବ ।" ଯାହାର ମୂଳରେ ଅଛି କେବଳ ଅଜ୍ଞାନତା ।

ପୂର୍ବରୁ ଆଦିମାନବଙ୍କ କପୋଳକଳ୍ପିତ ସୃଷ୍ଟି ହେଉଛି - 'ଭଗବାନ' । କାରଣ ସେହିସମୟର ମଣିଷପାଇଁ ବର୍ଷା, ମେଘ, ବିଜୁଳି, ଖରା, ରାତି, ଦିନ, ସୂର୍ଯ୍ୟ, ଚନ୍ଦ୍ର, ଏବଂ ପ୍ରକୃତିର ବିଭିନ୍ନ ରୂପର ରହସ୍ୟ ଅବୁଝାଥିଲା । କେତେବେଳେ ସେହି ପ୍ରକୃତି ଅତି ସୁନ୍ଦର ତଥା ରମଣୀୟ ହୋଇଥାଏ, ପୁଣି କେତେବେଳେ ସେହି ପ୍ରକୃତିର ଅତି ଭୟାବହ ରୂପ ଦେଖିବାକୁ ମିଳୁଛି । ପ୍ରାକୃତିକ ବିପର୍ଯ୍ୟୟ ଭିତରେ ଭୂମିକମ୍ପ, ବନ୍ୟା, ଝଡବତାସ, ଭୀଷଣ ଗରମ କିମ୍ବା ଥଣ୍ଡା ଯୋଗୁ କେବଳ ମଣିଷ ନୁହେଁ ସମସ୍ତ ଜୀବଜଗତ ପ୍ରଭାବିତ ହୋଇଥାଏ । ଏହାବ୍ୟତୀତ ବ୍ୟକ୍ତିଗତ ଭାବେ ମଣିଷ ନିଜର ଶାରୀରିକ ବ୍ୟାଧି, ମାନସିକ ଦୁଶ୍ଚିନ୍ତା, ପାରିବାରିକ ଓ ସାମାଜିକ ସମସ୍ୟାକୁ ନେଇଁ ବହୁତ ବିବ୍ରତ ହୋଇପଡ଼ିଥାଏ । ବିଜ୍ଞାନର ବିକାଶ ହୋଇ ନଥିବାରୁ ପ୍ରକୃତିର ରହସ୍ୟ କାହାରିକୁ ବୁଝା ପଡୁନଥିଲା । ମନରେ ଉଠୁଥିବା ପ୍ରଶ୍ନ - କଅଣ, କାହିଁକି, ଓ କିପରିର ଉତର ପାଉନଥିଲେ । ସେହିସମୟର କେତେକ

ବୁଦ୍ଧିଆ ମଣିଷ ଚିନ୍ତା କଲେ ଏବଂ ପ୍ରକୃତିର କୌଣସି ଗୋଟିଏ ଅଥବା ବହୁ ରୂପକୁ ପ୍ରତୀକ ଭାବେ ମାନିନେଇ ମେଘ, ବୃକ୍ଷ, ସୂର୍ଯ୍ୟ, ଆକାଶ, ପବନ ଇତ୍ୟାଦିରେ ସର୍ବୋଚ୍ଚ ଶକ୍ତି ବିଦ୍ୟମାନ ଥିବା ଭ୍ରମକୁ କଳ୍ପନା କରି ପ୍ରାର୍ଥନା କରିବା ସହିତ ପୂଜା କରିବା ଆରମ୍ଭ କରିଦେଲେ ।

କିଛି କାଳପରେ ମଣିଷର ମସ୍ତିଷ୍କ ଆହୁରି ବିକଶିତ ହେଲା । ସେ ବୁଝି ପାରିଲା ଯେ ପ୍ରକୃତିର କୌଣସି ଏକ ରୂପ ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ ଏବଂ ସମସ୍ତେ ଗୋଟିଏ ଅଦ୍ଭୁତ କାର୍ଯ୍ୟ କାରଣର ଶୃଙ୍ଖଳାରେ ବନ୍ଧା ହୋଇଛନ୍ତି । ସେ ତା'ପରେ କେବଳ ଦୃଶ୍ୟ ପ୍ରତୀକ ଉପରେ ଆସ୍ଥା ହରାଇ ଏକ ଅଦୃଶ୍ୟ ଶକ୍ତିକୁ କଳ୍ପନାରେ ମାନିନେଲା । ଏହିଭଳି ନିରାକାର ଓ ସର୍ବୋଚ୍ଚ ଶକ୍ତିରୂପେ ଭଗବାନଙ୍କ ଅସ୍ତିତ୍ୱ ପ୍ରତିଷ୍ଠା ଲାଭକଲା ।

ଏହିସବୁକୁ ସୃଷ୍ଟି କରିଥିବା ଏବଂ ନିୟନ୍ତ୍ରଣ କରୁଥିବା କୌଣସି ଏକ ବା ଅନେକ ମହାନଶକ୍ତି ଅଛି, ଯାହା ଅଦୃଶ୍ୟ ଭାବେ ସବୁ କରୁଛି । ମଣିଷ କିପରି ନିଜକୁ ବିଭିନ୍ନ ପ୍ରକାର ଆପଦ ବିପଦରୁ ରକ୍ଷା ପାଇ ବଞ୍ଚିରହିବ, ସେହିଟି ଥିଲା ଏକ ବଡ ସମସ୍ୟା । ବୁଦ୍ଧିଆମାନେ ଏହାର ଉପାୟ ଚିନ୍ତା କରୁ କରୁ ଅନୁଭବ କଲେ ଯେ, ଜୀବଜଗତର ଦୁର୍ବଳ ଥିବା ପ୍ରାଣୀ ସବଳ କବଳରୁ ରକ୍ଷା ପାଇବା ପାଇଁ ବିନମ୍ରତା ପ୍ରଦର୍ଶନ ପୂର୍ବକ ଆତ୍ମସମର୍ପଣ କରିଦେଲେ, ସବଳ ପ୍ରାଣୀର ମନରେ ଦୟା ଉଦ୍ରେକ ହୁଏ ଏବଂ ଦୁର୍ବଳ ପ୍ରାଣୀର କ୍ଷତି କରେନାହିଁ । ତେଣୁ ସେହି ଅଦୃଶ୍ୟ ଶକ୍ତି ଉଦ୍ଦେଶ୍ୟରେ ଆମେ ଯଦି ବିନମ୍ରତା ଓ ସମର୍ପଣ ଭାବ ଦେଖାଇପାରିବା ତେବେ ତଥାକଥିତ ଶକ୍ତି (ଯାହାକୁ ଭଗବାନ ବା ଈଶ୍ୱର ନାଁ ଦିଆଯାଇଛି) ଆମ ଉପରେ ଦୟା କରିବ । ଆମକୁ ବିପଦରୁ ରକ୍ଷା କରିବ, ଆମର ସମସ୍ତପ୍ରକାର ଶାରୀରିକ, ମାନସିକ, ପାରିବାରିକ ଓ ସାମାଜିକ ସମସ୍ୟା ମଧ୍ୟ ସୁଧାରିଦେବ । ଏହା ଥିଲା ସେସମୟର ଅବୈଜ୍ଞାନିକ ଚିନ୍ତାଧାରା ।

ଉପନିଷଦରେ ବ୍ରହ୍ମର କଳ୍ପନା ମଧ୍ୟ ଏହିପରି ଘଟିଛି । ପରେ ପରେ ଯେଉଁ ଅବତାରବାଦର କଳ୍ପନା ହେଲା, ସେଥିରେ ମାନବର ଦୁର୍ବଳତା ତୁଳନାରେ, ଏକ ସଚ୍ଚୋଟ, ଚରିତ୍ରବାନ ଏବଂ ସର୍ବଶକ୍ତି ସମ୍ପନ୍ନ ମାନବକୁ ଦେଖିବାର ଇଚ୍ଛା ବା

ଆକାଂକ୍ଷା ହିଁ ସ୍ପଷ୍ଟ ହେଉଛି, ଯାହା ଭିତରେ ସଂସାର ଓ ସଂସାର ବାହାରର ସମସ୍ତ ଶକ୍ତି ଠୁଳ ହୋଇଥିବ । ହିନ୍ଦୁ ଧର୍ମର ଅବତାର ପୁରୁଷମାନେ ସେହି ଇଚ୍ଛାରୁ ହିଁ ଜାତ ହୋଇଛନ୍ତି ।

ଶାସ୍ତ୍ର ଓ ପୁରାଣ ବର୍ଣ୍ଣିତ କାହାଣୀ ସବୁ ପଢ଼ିଲେ କିମ୍ବା ଶୁଣିଲେ ସାଧାରଣତଃ ବେଶ ତର୍କସଙ୍ଗତ ଲାଗୁଛି, କିନ୍ତୁ ତର୍କଶୀଳ ମନନେଇ, ପୂର୍ବାଗ୍ରହ ତ୍ୟାଗକରି, ଚିନ୍ତାକଲେ ପ୍ରମାଣିତ ହୋଇଯାଉଛି - ସେସବୁ ସହିତ ସାଧାରଣ ମାନବର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ । ସେସବୁ ମାନବର କଳ୍ପନା ପ୍ରସୂତ ମାୟାଜାଲ ମାତ୍ର । ଯାହା ମୂଳରେ ରହିଛି କେବଳ ଅଜ୍ଞାନତା, କିଛି ଦୂରେଇ ବସିବାର ଭୟ କିମ୍ବା କିଛି ଲାଭ ପାଇବାର ଲୋଭ । ମୋଟ ଉପରେ ଭିତ୍ତିହୀନବିଶ୍ୱାସ ହିଁ ଭରି ରହିଛି ।

ମୂଳତଃ ଏସବୁ ଏଇଥିପାଇଁ ଘଟୁଛି, କାରଣ ମାନବ ସଦାବେଳେ ନିଜକୁ ଅସହାୟ, ଅକ୍ଷମ, ଦୁର୍ବଳ ଏବଂ ଅପୂର୍ଣ୍ଣ ବୋଲି ମାନି ଆସିଛି । ପ୍ରକୃତିର ଅନ୍ୟାନ୍ୟ ଜୀବଜଗତ ଯଥା : ବୃକ୍ଷଲତା, ପଶୁ, ପକ୍ଷୀ ଓ ଜଳଚର ପ୍ରାଣୀ ଇତ୍ୟାଦିଙ୍କ ଭଳି ନିଜକୁ ଏକ ପୂର୍ଣ୍ଣ ଏକକ ମାନି ବଞ୍ଚି ଶିଖିନାହିଁ । ସେ ଅନ୍ୟ ଉପରେ ନିର୍ଭର କରି ବଞ୍ଚି ରହିବାର ସୁଖ ପାଉଛି । ଏହା ହିଁ ତା'ର ଅଶାନ୍ତିର ମୂଳ କାରଣ । ଏହା ଏକ ବିଚିତ୍ର କଥା ଯେ, ଅଧିକାଂଶ ମାନବ ନିଜର ଅଭାବ ଅସୁବିଧାକୁ ଦୂର କରିବା କିମ୍ବା ନିଜର ଗୁଣକୁ ଉଚିତ ମାର୍ଗରେ ବିକଶିତ କରିବା ପାଇଁ କମ ଚିନ୍ତା କରିଥାନ୍ତି । ନିଜକୁ ଚିନ୍ତନର କେନ୍ଦ୍ରକରି ଦେଖିବା ବଦଳରେ, ସେମାନେ କଳ୍ପିତ ତ୍ରାଣକର୍ତ୍ତା ଭଗବାନଙ୍କ ଚିନ୍ତନରେ ବେଶୀ ଧ୍ୟାନ ଦେଇଥାନ୍ତି ।

ପୂର୍ବରୁ ଆଦିମାନବର ଭଗବାନଙ୍କ ସମ୍ପର୍କରେ ଯେଉଁ ଧାରଣା ସବୁ ଥିଲା, ଆଜିର ଯୁଗରେ ବିକଶିତ ମାନବ ପାଇଁ ସେସବୁ ଏକାନ୍ତ ଭାବେ ଠିକ ବା ସତ୍ୟ ହେବା ଜରୁରୀ ନାହିଁ । ଯଦି ଆମେ ତାହା ସବୁ ସତ୍ୟ ବୋଲି ମାନିନେବା, ତଥାପି ପ୍ରଶ୍ନ ଉଠୁଛି - କେବଳ ମଣିଷ ଜୀବନ ସହିତ ଭଗବାନଙ୍କ ସିଧା ଓ ବିଶେଷ ସମ୍ବନ୍ଧ ରହିଲା କାହିଁକି ? କେବଳ ମାନବ ହିଁ ସମସ୍ତ ଜୀବଜଗତଙ୍କ ମଙ୍ଗଳ ପାଇଁ ଧାର୍ମିକ କର୍ମକାଣ୍ଡ ଓ ପୂଜା ଅର୍ଚ୍ଚନା ସହିତ ନିଜକୁ ସମର୍ପଣ କରିବ କାହିଁକି ? ଭଗବାନ ଯଦି

 

ବା ଅଛି, ସେ ପ୍ରକୃତିର ବିଭିନ୍ନ ରୂପରେ ଆମ ଆଗରେ ଅଭିବ୍ୟକ୍ତ ହେଉଛି । ସେହି ଭଳି ଗୋଟିଏ ନୈସର୍ଗିକ ପ୍ରକ୍ରିୟା କ୍ରମାଗତ ଭାବେ ଚାଲିଛି ।

ପ୍ରକୃତିରୁ ସୃଷ୍ଟି ହୋଇଥିବା ବୃକ୍ଷଲତା, ପଶୁପକ୍ଷୀ, ସୂର୍ଯ୍ୟ, ଚନ୍ଦ୍ର ନିୟମତଃ ନିଜ ନିଜ ପ୍ରାକୃତିକ ରୂପରେ ବିଦ୍ୟମାନ ଅଛନ୍ତି । ସେମାନେ ନିଜର କର୍ତ୍ତବ୍ୟ ମଧ୍ୟ ପାଳନ କରୁଛନ୍ତି । କେବଳ ମଣିଷ କାହିଁକି କୃତ୍ରିମତା ଆଣି, ଅନେକ ପ୍ରକାର ଅବୈଜ୍ଞାନିକ ନୀତି ନିୟମ ଗଢି, କର୍ମକାଣ୍ଡ କରି ପ୍ରକାଶ କରିବାକୁ ଚାହିଁବ ଯେ, ସେ କାହାରି ପାଖରେ ଋଣୀ ତେଣୁ କୃତଜ୍ଞ ପ୍ରକଟ କରିବା ଆବଶ୍ୟକ ?

ଏକ ଭିତିହୀନ ବିଶ୍ୱାସର ବଶବର୍ତ୍ତୀ ହୋଇ ସେ କାହିଁକି ନିଜର ମୂଲ୍ୟବାନ ସମୟ, ଶକ୍ତି ଓ ଧନ ନଷ୍ଟ କରିବ ? ଆହୁରି ଏକ ପ୍ରଶ୍ନ ଉଠୁଛି - ଯାହା ନୈସର୍ଗିକ ପ୍ରକ୍ରିୟା ବା କଥିତ ଭଗବାନଙ୍କ କାର୍ଯ୍ୟ ତା' ସହିତ ମାନବର ଏହି କର୍ମକାଣ୍ଡ ସହିତ କ'ଣ ସମ୍ବନ୍ଧ ରହୁଛି ?

ଯଦି ମାନବ ମଧ୍ୟ ପ୍ରକୃତିକୁ ବା ଭଗବାନଙ୍କୁ ନିଜର ପୂଜା ଓ ପ୍ରାର୍ଥନା ଦ୍ୱାରା ପ୍ରଭାବିତ କରି ଦେଇପାରେ, ତା'ହେଲେ ସେ ମଧ୍ୟ ଏକ ସାଧାରଣ ଶକ୍ତି ମାତ୍ର । ଅସାଧାରଣ ଶକ୍ତି କିପରି ହେବ ? ପୂଜା ଓ ପ୍ରାର୍ଥନା କରି ଯଦି ନିଜର ସ୍ୱାର୍ଥ ସାଧନ କରାଯାଇ ପାରିବ ତେବେ ଭଗବାନଙ୍କ ମହାନତା ନୁହେଁ ବରଂ ବ୍ୟବସାୟିକତା ବେଶୀ ପ୍ରମାଣିତ ହେଉଛି । ସତରେ ଭଗବାନ କ'ଣ ମାନବଠାରୁ ଏସବୁ ଅପେକ୍ଷା ରହୁଛି ? ଯଦି ଅପେକ୍ଷା ରଖୁଛି ତେବେ ଦୁନିଆର ସବୁ ଧର୍ମରେ ଅପେକ୍ଷାର ସ୍ୱରୂପ ଏକାଭଳି ହୋଇନାହିଁ କାହିଁକି ? ଆମେ ଦେଖୁଛୁ - ଭଗବାନଙ୍କ ଅପେକ୍ଷାର ରୂପ ଏକ ନୁହେଁ, କିମ୍ବା ନିଶ୍ଚିତ ମଧ୍ୟ ନୁହେଁ । ଗୋଟିଏ ଯୁଗ ଓ ଗୋଟିଏ ଦେଶର ବ୍ୟକ୍ତିମାନେ ଯେଉଁ ମାନଦଣ୍ଡ ନେଇ ଭଗବାନଙ୍କ ଅପେକ୍ଷାକୁ ଦେଖୁଛି, ଅନ୍ୟ ଏକ ଯୁଗ ଓ ଅନ୍ୟ ଏକ ଦେଶର ବ୍ୟକ୍ତିମାନଙ୍କ ପାଇଁ ତାହା ସମ୍ପୂର୍ଣ୍ଣ ବଦଳି ଯାଉଛି । ଉଦାହରଣତଃ ଉତର ବୈଦିକ କାଳରେ ନିତ୍ୟ ଯଜ୍ଞକର୍ମ ଉପାସନାର ଏକ ଅନିବାର୍ଯ୍ୟ ଅଙ୍ଗ ଥିଲା ଏବଂ ମାଂସ ଭକ୍ଷଣ ବ୍ରାହ୍ମଣମାନଙ୍କ ସହିତ ସମସ୍ତଙ୍କ ପାଇଁ ଏକ ସାଧାରଣ କଥା ଥିଲା । କିନ୍ତୁ ଭକ୍ତିକାଳ (15ଶ, 16ଶ ଶତାବ୍ଦୀ) ପର୍ଯ୍ୟନ୍ତ ଆସୁ

ଆସୁ ଯଜ୍ଞ ପ୍ରଥା ବହୁତ କମିଗଲା ଏବଂ ମାଂସଭକ୍ଷଣକୁ ଦୋଷ ବୋଲି କୁହାଗଲା । ବିଶେଷ କରି ବ୍ରାହ୍ମଣମାନଙ୍କ ପାଇଁ ତାହା ବର୍ଜିତ ହୋଇଗଲା ।

ବେଦମାନଙ୍କରେ ଇନ୍ଦ୍ର ଥିଲେ ଦେବତାମାନଙ୍କର ରାଜା ଓ ସବୁଠାରୁ ବଡ଼ ଦେବତା । କିନ୍ତୁ ଗୁପ୍ତକାଳ ଅସିଲାବେଳକୁ ବିଷ୍ଣୁ ଅପେକ୍ଷା ଇନ୍ଦ୍ର ହୀନତର, ଲମ୍ପଟ ଓ ଦୁରାଚାରୀ ହୋଇଗଲେ । ଭାରତରେ ହିନ୍ଦୁମାନେ ମୂର୍ତ୍ତି ପୂଜାକୁ ଭକ୍ତି ଭାବରେ ଏକ ସହଜ ସାଧନ ରୂପେ ମାନୁଥିବା ବେଳେ ଆରବ ଦେଶରେ ବିକଶିତ ଇସଲାମଧର୍ମରେ ତାହା କାଫେରମାନଙ୍କ ଲକ୍ଷଣ ବୋଲି ମାନିଲେ । ପ୍ରାୟ ଦେଖାଯାଏ, ମଣିଷମାନଙ୍କୁ ଧର୍ମବେଡ଼ିରେ ବାନ୍ଧି ରଖିବା ପାଇଁ ଆଚାର ଓ ବିଚାର ଦୁଇଟି ଯାକ ଅସ୍ତ୍ର ବ୍ୟବହାର କରାଯାଏ । ଏହିସବୁ ଅବ୍ୟବସ୍ଥା ଦେଖି ମନେ ହେଉଛି - ଧର୍ମର କଳ୍ପନା କରିଥିବା ଚାଲାକ ଲୋକମାନେ ଜାଣିଶୁଣି କର୍ମକାଣ୍ଡ ଗୁଡ଼ିକୁ ତଥାକଥିତ ଭଗବାନ ସହିତ ଯୋଡି ରଖିଛନ୍ତି, ଯାହା ଦ୍ୱାରା ସେମାନେ ଏକ ବଳିଷ୍ଠ ନିୟମ ଭିତରେ ଧର୍ମଭୀରୁ ମାନବ ସମାଜକୁ ଜଡ଼ ବା ଅପାଙ୍ଗ ବନେଇ ରଖି ପାରିବେ ।

ଧର୍ମରେ ପ୍ରଚଳିତ ଧାରଣା ଯାହା ସବୁଭଗବାନଙ୍କ ଆଦେଶ ବା ଇଚ୍ଛା ବୋଲି କୁହାଯାଉଛି, ସେସବୁ ମଧ ମଣିଷର କପୋଳକଳ୍ପିତ ଧାରଣା ମାତ୍ର । ଏସବୁର ସମ୍ବନ୍ଧ ଭଗବାନଙ୍କ ସହିତ କମ ଏବଂ ଦେଶ, କାଳ ଓ ପରିସ୍ଥିତି ସହିତ ଅଧିକ ରହୁଥିବା ଦେଖା ଯାଉଛି । ଧର୍ମର ଏଭଳି ଧାରଣା ସାଧାରଣତଃ ଐକ୍ୟ ବା ସମୂହ ରୂପେ ମାନବର ସ୍ୱାର୍ଥ ସହିତ ମୂଳତଃ ଜଡିତ ରହିଥାଏ । ଭାରତରେ ବ୍ରାହ୍ମଣ, କ୍ଷତ୍ରିୟ, ୟୁରୋପରେ ପାଦ୍ରୀ ଏବଂ ସାମନ୍ତବାଦୀ ଏବଂ ମୁସଲମାନମାନଙ୍କ ମଧରେ ମୌଲ୍ଲାମାନେ ଏହି ଆଳରେ ଯୁଗ ଯୁଗ ଧରି ସମାଜକୁ ନିଜର ନାଗପାଶରେ ବାନ୍ଧି ରଖିଛନ୍ତି ।

ପ୍ରତ୍ୟେକ ଧର୍ମରେ ସମୟାନୁକ୍ରମେ ପରିବର୍ତ୍ତନ ଘଟୁଛି । ତା'ର ସ୍ୱରୂପ କେବେ ବି ସ୍ଥିର ବା ଏକାଭଳି ରହୁନାହିଁ । ହିନ୍ଦୁଧର୍ମରେ ବୈଦିକ ଓ ପୁରାଣକାଳରେ ଥିବା ଯଜ୍ଞ, ମାଂସାହାର, ବହୁପତ୍ନୀ, ବହୁପତି ଆଦି ପ୍ରଥା ଆଜିର ଯୁଗରେ ପ୍ରାୟ ଲୁପ୍ତ ହୋଇ ଗଲାଣି । ଜୈନମାନେ ମୂଳତଃ ମୂର୍ତ୍ତିପୂଜକ ନଥିଲେ କିନ୍ତୁ ଆଜି ଅନେକ

ସ୍ଥାନରେ ଜୈନମନ୍ଦିର ନିର୍ମାଣ ହୋଇଛି । ସେହି ମନ୍ଦିର ଭିତରେ ବିଧି ଅନୁସାରେ ପୂଜା ଅର୍ଚ୍ଚନା ମଧ୍ୟ ହେଉଛି । ଏଥିରୁ ସ୍ପଷ୍ଟ ହୋଇଯାଉଛି ଯେ କଥିତ ଧର୍ମ ମଧ୍ୟ ଭଗବାନ ଭଳି ମାନବର ଏକ ଭ୍ରମ ମାତ୍ର । ମାନବର ପାରଲୌକିକ ମହତ୍ତ୍ୱ କେବଳ କଳ୍ପନା ବ୍ୟତୀତ ଆଉ କିଛି ନୁହେଁ ।

ଧର୍ମ ବିଷୟରେ ଆଲୋଚନା କଲେ ଧାର୍ମିକ ଲୋକମାନେ ପ୍ରାୟ ତର୍କ ଦିଅନ୍ତି - "ଆଚାର ଓ କର୍ମକାଣ୍ଡ ତ ଆମର ଦୈନନ୍ଦିନ ସାମାଜିକ ଜୀବନର ଏକ ବ୍ୟବହାରିକ ଅଂଶ କିନ୍ତୁ ଧର୍ମର ସମ୍ବନ୍ଧ ହେଉଛି ସେହି ସବୁ ଉଚ୍ଚ ଧାରଣା ବା ବିଚାର, ଯାହାଦ୍ୱାରା କ୍ଷୁଦ୍ର ମାନବର ପ୍ରଗତି ଓ ସମୃଦ୍ଧି ଘଟୁଛି ।"

ପ୍ରଶ୍ନ ଉଠୁଛି - ଏହା ଯଦି ସତ, ତା'ହେଲେ ଭଗବାନ, ପାପ, ପୁଣ୍ୟ, ସ୍ୱର୍ଗ, ନର୍କ ଆଦି ମାନବ ସହିତ ଯୋଡିବା ଆବଶ୍ୟକ କ'ଣ ? ଦୁଇଟି ଭାଗକୁ ଅଲଗା ଅଲଗା ଭାବେ ରଖା ଯାଉନି କାହିଁକି ?

ଏହା ପଛରେ ଥିବା କାରଣ ମଧ୍ୟ ସ୍ପଷ୍ଟ ହୋଇଯାଉଛି । ଅଦୃଶ୍ୟ ସତ୍ତା, ଅଦୃଶ୍ୟ ଭାଲ ଏବଂ ଅଦୃଶ୍ୟ ଦଣ୍ଡର ଭୟ ସହିତ ଯୋଡି, ଧର୍ମର ଠିକାଦାର, ପଣ୍ଡିତ, ମୌଲ୍ଲା ଓ ପାଦରୀମାନଙ୍କ ସାହାଯ୍ୟରେ ବଢୁଥିବା ପୁଞ୍ଜିପତି, ବ୍ୟାପାରୀ ନିଜର ହିତ ସାଧନ ଦେଖୁଛନ୍ତି । ସେଥିପାଇଁ ସେମାନେ ସାମାଜିକ ଆଚାରକୁ ଧର୍ମ ନାମରେ ରୂଢିବାଦକୁ ଅଧିକରୁ ଅଧିକ କଠୋର କରି ଚାଲିଛନ୍ତି ।

ସେମାନେ ଭଲକରି ଜାଣିଛନ୍ତି - ଯେତେବେଳ ଯାଏଁ ସରଳ ବିଶ୍ୱାସୀ ଜନତାର ମସ୍ତିଷ୍କରେ ସମସ୍ତ ତର୍କଦ୍ୱାର ଓ ଝରକା ବନ୍ଦ ରଖା ଯାଇପାରିବ, ସେତେବେଳ ଯାଏଁ ସେମାନଙ୍କୁ ଶୋଷଣ କରିବା ସମ୍ଭବ । ଏହା ସ୍ପଷ୍ଟ ଦେଖିବାକୁ ମିଳେ ଯେ ଧର୍ମର ପରିଭାଷା ଏବଂ ବ୍ୟାଖ୍ୟା ଯେତେ ତର୍କସଙ୍ଗତ ଓ ବୌଦ୍ଧିକ ଭାବେ କରାଯାଉ ନା କାହିଁକି, ଧର୍ମର ମାନଦଣ୍ଡ ସାମାଜିକ ଜୀବନରେ କେବଳ ଧର୍ମଗୁରୁମାନଙ୍କ ନିର୍ଦ୍ଧାରିତ ଲୋକାଚାର ଭାବେ ପ୍ରଚଳିତ ହେଉଛି ।

ଏଥିପାଇଁ ସମାଜରେ ଯେଉଁ ବ୍ୟକ୍ତି ସାମାଜିକ ନିଷ୍ଠା ଏବଂ ସଚ୍ଚୋଟ ଭାବେ ଚାଲୁଥିବା ସତ୍ତ୍ୱେ ଭଗବାନ ଓ ଧର୍ମକୁ ଅସ୍ୱୀକାର କରେ, ତା'କୁ ସମାଜ ନିନ୍ଦାକରେ । ଏପରିକି ତାକୁ ଜୀବନରେ ମାରିଦେବାକୁ ମଧ୍ୟ ଚେଷ୍ଟା କରାଯାଏ ।

ଅନ୍ୟ ପକ୍ଷରେ ଯେଉଁ ବ୍ୟକ୍ତି ସମସ୍ତ ପ୍ରକାର ଅପକର୍ମ କରୁଥିବା ସତ୍ତ୍ୱେ କେବଳ ଲୋକଦେଖାଣିଆ ଭାବେ ପୂଜାପାଠ କରି ଧର୍ମଗ୍ରନ୍ଥକୁ ହାତରେ ଧରି, ମୁହଁରେ ନୀତି ସଙ୍ଗତ ଧର୍ମବାଣୀ ଉଚ୍ଚାରଣ କରୁଥାଏ, ସମାଜରେ ତା'ର ଖୁବ ସମ୍ମାନ ଓ ଖ୍ୟାତି ଥାଏ ।

ଏହା ବି ଭାବିବା ଭୁଲ ଯେ ଦୁନିଆର କୌଣସି ଗୋଟିଏ ଦେଶର ବା ଜାତିର ଧର୍ମ ଅନ୍ୟ ଦେଶର ଧର୍ମମାନଙ୍କ ଅପେକ୍ଷା ପ୍ରଗତିଶୀଳ ବା ତର୍କସଙ୍ଗତ । ଯେଉଁଠି ଧର୍ମ ଅଛି, ସେଇଠି ଭିତ୍ତିହୀନବିଶ୍ୱାସ ଓ ରୂଢ଼ିବାଦ ସବୁ ଆପେ ଆପେ ପହଞ୍ଚି ଯାଏ ।

ଧର୍ମମାର୍ଗକୁ ଆପଣ କଥିତ ଭକ୍ତିମାର୍ଗ କୁହନ୍ତୁ ଅଥବା ଜ୍ଞାନମାର୍ଗ କୁହନ୍ତୁ, ଦୁଇଟି ଯାକ ପଳାୟନବାଦୀ ମାର୍ଗ । କାରଣ ଭକ୍ତିମାର୍ଗରେ ଅନ୍ଧଶ୍ରଦ୍ଧା ଓ କର୍ମକାଣ୍ଡ ଭରିରହିଛି ଏବଂ ଜ୍ଞାନମାର୍ଗରେ ଏକ ବିଭ୍ରାନ୍ତିକର ଆତ୍ମବିଶ୍ୱାସ ଭରିରହିଛି । ଯାହା ହେଲେ ବି ଦୁଇଟିଯାକ ମାନବକୁ ବାସ୍ତବ ଦୁନିଆରୁ ଦୂରେଇ ରଖୁଛି । ଭକ୍ତିର ମାର୍ଗ ଲୋକ ଧର୍ମର ଶିକ୍ଷା ଦେବା ବାହାନାରେ ସମାଜକୁ ରୂଢ଼ିବାଦ, ଆଡ଼ମ୍ବରମୟ କାର୍ଯ୍ୟକଳାପ ଏବଂ ଭିତ୍ତିହୀନ ବିଶ୍ୱାସ ହିଁ ଦେଉଛି । ଜ୍ଞାନ ନାମରେ କେବଳ ମୃତ୍ୟୁ ହିଁ ଜୀବନର ସତ୍ୟ, ଦୁନିଆର ସମସ୍ତ ଜୀବନ୍ତ ଓ ଜଡ଼ ବସ୍ତୁ, କ୍ଷଣିକ ଓ ଅସ୍ଥାୟୀ କହି ଚଳନ୍ତି ଜୀବନକୁ ଅସ୍ୱୀକାର କରିଦେଉଛି । ଗୋଟିଏ ମାର୍ଗ ଜୀବନକୁ ବିକୃତ କରିଦେଉଛି ତ ଅନ୍ୟ ମାର୍ଗଟି ଜୀବନକୁ ଉପେକ୍ଷା କରିଦେଉଛି ।

ୟୁରୋପରେ ଖ୍ରୀଷ୍ଟିୟାନଙ୍କ ସହ ମୁସଲମାନଙ୍କ ଲଢେଇ, କେବଳ ଖ୍ରୀଷ୍ଟିୟାନମାନଙ୍କ ଭିତରେ କ୍ୟାଥୋଲିକ ଓ ପ୍ରୋଟେଷ୍ଟାଣ୍ଟମାନଙ୍କ ସଂଘର୍ଷ, ହିନ୍ଦୁ ଓ ମୁସଲମାନମାନଙ୍କ ପାରସ୍ପରିକ ବିଦ୍ୱେଷ ମନୋବୃତ୍ତି, , ଶୈବ ଓ ଶାକ୍ତ, ଅକାଳୀ ଓ ଶିଖ, ମୁସଲମାନ ଭିତରେ ଶିୟା ଓ ସୁନ୍ନି, ହିନ୍ଦୁମାନଙ୍କ ସହ ବୌଦ୍ଧ ଓ ଜୈନମାନଙ୍କର ସଂଘର୍ଷର କାହାଣୀ ଇତିହାସ ପୃଷ୍ଠାରେ ଭରିରହିଛି ।

ହିନ୍ଦୁମାନଙ୍କ ଭିତରେ ଉଚ୍ଚ ଓ ନୀଚ ଜାତି ଭିତରେ ଲଢେଇ ଆଜି ଶିଖର ସ୍ଥାନରେ ପହଞ୍ଚି ଯାଇଛି । ଲୋକମାନଙ୍କ ଭିତରେ ସ୍ନେହ ସୌହାର୍ଦ୍ଦ୍ୟ କିପରି ସୃଷ୍ଟିହେବ ତାହା କାହାରିକୁ ବୁଝା ପଡୁନି । ମାନବତା ପ୍ରଚାର କରୁଥିବା ଭଣ୍ଡ

 

ଧର୍ମଗୁରୁମାନେ ଜାତିବାଦକୁ ବଞ୍ଚେଇ ରଖିବାକୁ ଚାହୁଁଛନ୍ତି । ଶାସକ ଗୋଷ୍ଠୀ କେବେ ବି ଚାହୁଁନାହାନ୍ତି ଯେ ସମାଜରେ ଜାତିପ୍ରଥା ନରହୁ । ଜାତିପ୍ରଥା ନରହିଲେ ସେମାନଙ୍କର ଭୋଟବ୍ୟାଙ୍କ ଖାଲି ହୋଇଯିବ ।

ଧର୍ମୀୟ ମତବାଦକୁ ନେଇ ସଂସାରରେ ଯେଉଁଭଳି ଧର୍ମାବଲମ୍ବୀମାନଙ୍କ ଭିତରେ ଘୃଣା, ଦ୍ୱେଷ ଓ ହିଂସାର ପ୍ରସାର ହୋଇଛି ଏବଂ ଯେଉଁଭଳି ଦୁନିଆଟି ଗୋଟିଏ ଆଖଡ଼ାସ୍ଥଳୀ ପାଲଟିଯାଇଛି ସେକଥା କିଏ ବା ନ ଜାଣେ ? ସାରା ଦୁନିଆରେ ଯେଉଁ ପରିମାଣରେ ଶୋଷଣ, ଅତ୍ୟାଚାର, ରକ୍ତପାତ ଏବଂ ଅବ୍ୟବସ୍ଥା ଭିତରେ ମାନବ ସମାଜ ଗତି କରୁଛି ସେସବୁ ଦେଖିଲେ, ଆଦୌ ବିଶ୍ୱାସ ହେଉନି ଯେ ଭଗବାନ ଭଳି କୌଣସି ଅତିମାନବୀୟ ମହାନ ସତ୍ତା କେଉଁଠି ଅଛି, ଯିଏ କି ପୂଜା ପାଇବାର ଯୋଗ୍ୟ ।

ସେଥିପାଇଁ ମାନବ ସମାଜର ପ୍ରତ୍ୟେକ ବ୍ୟକ୍ତିଙ୍କ ଭିତରେ ନୂତନ ବୈଜ୍ଞାନିକ ଚିନ୍ତନ ଜାଗ୍ରତ ହେବା ଉଚିତ । ପ୍ରତ୍ୟେକ ବିଷୟକୁ ତର୍କ ଦେଇ ବିଚାର କରିବା ଉଚିତ । ଭଗବାନ ଓ ଧର୍ମର ମାୟାଜାଲକୁ ଠିକ ଭାବେ ଚିହ୍ନିବା ଉଚିତ । ତେବେ ଯାଇ ମାନବର ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ସ୍ତରରେ କଲ୍ୟାଣ ସାଧନ ହୋଇପାରିବ ।

*****<>*****

**"ଈଶ୍ୱରଙ୍କୁ ନମାନିବା ଯଦି ନାସ୍ତିକତା ତେବେ ଆମେ ସମସ୍ତେ ନାସ୍ତିକ । କାରଣ କେହି କାହାରି ଧର୍ମର ଈଶ୍ୱରଙ୍କୁ ମାନୁନାହାନ୍ତି । ତେଣୁ ସମସ୍ତଙ୍କ ଦୃଷ୍ଟିରେ ସମସ୍ତେ ନାସ୍ତିକ"**

# ମାନିଲେ ଠାକୁର ନମାନିଲେ ପଥର (?)

ଯେଉଁଠି ତଥାକଥିତ ଦେବୀ ଦେବତାଙ୍କ ଉପରେ ସନ୍ଦେହ ବା ପ୍ରଶ୍ନ ଉଠୁଛି ସେଇଠି ସମସ୍ତ ଧର୍ମ ବିଶ୍ୱାସୀମାନେ କୁହନ୍ତି - "ମାନିଲେ ଠାକୁର ନମାନିଲେ ପଥର" । ଏହାସହିତ ଗୋଟିଏ ଅଲିଖିତ ବାଧତାମୂଳକ ଆଦେଶ ରହିଥିବା ଜଣାଯାଏ ଯେ କାଠ ପଥରରେ ତିଆରି ଦେବୀ ଦେବତାଙ୍କୁ ତୁମେ ମାନିବାକୁ ହିଁ ପଡିବ । କାରଣ ସେମାନେ ହେଉଛନ୍ତି ସର୍ବଶକ୍ତିମାନ, ସର୍ବଜ୍ଞ, ସର୍ବବିଦ୍ୟମାନ ଏବଂ ଆପଣଙ୍କ ଜୀବନକୁ ନିୟନ୍ତ୍ରଣ କରୁଛନ୍ତି ବୋଲି ଦାବି କରା ଯାଉଛି । ତୁମେ ଯେତେ ନିଷ୍ଠାପର ସହିତ କଠିନ ପରିଶ୍ରମ କଲେ ମଧ ଦେବୀ ଦେବତାଙ୍କ କୃପା ବିନା ସୁଫଳ ପାଇବ ନାହିଁ ।

ଉପରୋକ୍ତ ଆଦେଶ ଯଦି ସତ୍ୟ ତେବେ ଠାକୁରଙ୍କୁ ମାନିବା ବା ନମାନିବାର ପ୍ରଶ୍ନ ଉଠୁଛି କାହିଁକି ? କେହି ନମାନିଲେ ସେ ଠାକୁର ନହୋଇ ନିର୍ଜୀବ, ନିଷ୍କଳ ପଥର ହୋଇ ପଡି ରହିବ କାହିଁକି ? ଠାକୁରଙ୍କୁ ମଣିଷ ନମାନିବା ଅର୍ଥ ସେ ବ୍ୟକ୍ତିଗତ ଭାବେ କୌଣସି ପ୍ରକାରେ ଠାକୁରଙ୍କ ଅସ୍ତିତ୍ୱକୁ ଅନୁଭବ କରି ପାରୁନି । ପ୍ରାକୃତିକ ଜଗତରେ ଥିବା ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ସମୁଦ୍ର, ପାହାଡ଼, ପାଣି,ପବନ, ପଶୁ, ପକ୍ଷୀ, ବୃକ୍ଷ ଆଦିକୁ କୌଣସି ମନୁଷ୍ୟ ମାନୁ ନାହିଁ ବୋଲି କହି ପାରିବକି ? କାରଣ ସେ ବ୍ୟକ୍ତିଗତ ଭାବେ ବିଭିନ୍ନ ବସ୍ତୁର ଅସ୍ତିତ୍ୱକୁ ଅନୁଭବ କରି ପାରୁଛି । ଏଗୁଡିକ ପ୍ରତି ସେ ନିଃସନ୍ଦେହ ।

ମୁଁ ଗୋଟିଏ ସାଧାରଣ ମଣିଷ । ମୋର ଜ୍ଞାନ, ବୁଦ୍ଧି ଓ ଶାରୀରିକ ବଳ ସବୁକିଛି ଏକ ସୀମିତ ମାତ୍ରାରେ ଅଛି । ଏହି ସୀମିତ ଜ୍ଞାନ, ବୁଦ୍ଧି ଓ ବଳ ସାହାଯ୍ୟରେ ମୁଁ ଏକ ସୀମିତ ମାତ୍ରାରେ ହିଁ ସଫଳତା ମଧ ପାଇବି । ସୀମିତ ଜ୍ଞାନ ଥିବା ସତ୍ତ୍ୱେ ସମାଜରେ ମହାଜ୍ଞାନୀ ବୋଲି ପ୍ରସିଦ୍ଧି ପାଇବା ପାଇଁ ବିଶେଷ ଜ୍ଞାନ ଅର୍ଜନ କରିବାକୁ ପଡିବ । ଏଥିପାଇଁ ଐଶ୍ୱରୀୟ ଶକ୍ତି ଆବଶ୍ୟକ ବୋଲି ଏକ ଭୁଲ ବିଶ୍ୱାସ ମନରେ ଥାଏ । ସେହିଭଳି ସୀମିତ ବୁଦ୍ଧିକୁ ନେଇ ଅସୀମିତ ଧନ ରୋଜଗାର କରିବା ସମ୍ଭବ ନୁହେଁ କିମ୍ବା ନିଜର ସୀମିତ ଶାରୀରିକ ବଳ ନେଇ

ଗୋଟିଏ ହିଂସ୍ର ବାଘ ସହିତ ଲଢେଇ କରିହେବ ନାହିଁ । ଏହି ସବୁ ପାଇଁ ମଧ୍ୟ ଐଶ୍ୱରୀୟ ଶକ୍ତିର ସାହାଯ୍ୟ ଦରକାର ବୋଲି କୁହାଯାଏ । ସେଥିପାଇଁ ପଥରରେ ତିଆରି ଠାକୁର ମୂର୍ତ୍ତିକୁ ଭକ୍ତି ଭାବରେ ପୂଜା କଲେ ତୁମେ ସବୁକିଛି ଅସୀମିତ ଭାବେ ପାଇଁ ପାରିବ ବୋଲି ଏକ କାଳ୍ପନିକ ଓ ମିଥ୍ୟା ଆଶ୍ୱାସନା ମଣିଷ ମନରେ ଜମାଟ ବାନ୍ଧି ରହିଛି । ଭଗବାନଙ୍କୁ କେହି ଦେଖି ନାହାନ୍ତି, କେବଳ ଅନୁଭବ କରିଥିବା କଥା ସମସ୍ତେ ଦାବି କରିଥାନ୍ତି । ବିଭିନ୍ନ ଆକାର ଓ ରୂପରେ ଗଢା ଯାଉଥିବା କାଠ, ପଥର, ମାଟି ଓ ଧାତୁରେ ତିଆରି ଦେବୀଦେବତାଙ୍କ ମୂର୍ତ୍ତିକୁ ହିଁ ସଜୀବ ଠାକୁର ବୋଲି ବିଶ୍ୱାସ କରିବାକୁ କୁହାଯାଏ ।

ଠାକୁରଙ୍କୁ ନମାନିବା ପାଇଁ ମନରେ ସନ୍ଦେହ ସୃଷ୍ଟି କରୁଥିବା ଗୋଟିଏ ଉଦାହରଣ ଦେଖନ୍ତୁ - ତିରୁପତି ମନ୍ଦିରରେ ବୁଲେଟ ପ୍ରୁଫ କବାଟ ଲଗାଇବା ପାଇଁ ମନ୍ଦିର କମିଟି ଯୋଜନା କରୁଛନ୍ତି । କାରଣ ତିରୁପତି ଭଗବାନଙ୍କ ପ୍ରତି ବିପଦ ଦେଖା ଦେଇଛି ।

ଏଇଠି ପ୍ରଶ୍ନ ଉଠୁଛି - ଯେଉଁ ଠାକୁରଙ୍କ ପ୍ରସିଦ୍ଧି ଦେଶ ବିଦେଶରେ ପ୍ରଚାର ହେଉଛି, ଯେଉଁ ଠାକୁରଙ୍କ ଦ୍ୱାରା ସୁରକ୍ଷା ପାଇବାପାଇଁ ଲକ୍ଷ ଲକ୍ଷ ସ୍ତ୍ରୀ ପୁରୁଷ କୋଟି କୋଟି ଟଙ୍କା, ସୁନା, ହୀରା ଆଦି ଦାନ କରୁଛନ୍ତି, ସେହି ଠାକୁରଙ୍କ ପୁଣି ସୁରକ୍ଷା ମଣିଷ ହିଁ କରିବ କିପରି ?

ଆଉ ଗୋଟିଏ ଉଦାହରଣ ଆମରି ପ୍ରଦେଶର ବିଖ୍ୟାତ ଜଗନ୍ନାଥ ମହାପ୍ରଭୁଙ୍କ ସୁରକ୍ଷା ପାଇଁ ଅନେକ ଭକ୍ତ ଚିନ୍ତିତ ହେଉଥିବା ଦେଖା ଯାଉଛି । ଜଗନ୍ନାଥଙ୍କ ଶକ୍ତି ଉପରେ ଯଦି କେହି ପ୍ରଶ୍ନ କରୁଛି ତ ତାଙ୍କର ଭକ୍ତଗଣ ଅସହିଷ୍ଣୁ ହୋଇ ମାରି ଗୋଡ଼ାଉଛନ୍ତି । ସେହିମାନଙ୍କୁ ବିନୀତ ଭାବେ ଗୋଟିଏ ପ୍ରଶ୍ନ ପଚାରୁଛି -"ସତରେ କ'ଣ ଆମ ଜଗନ୍ନାଥଙ୍କ ଐଶ୍ୱରୀୟଶକ୍ତି ନାହିଁ ନିଜକୁ ରକ୍ଷାକରିବାପାଇଁ ? ଆମେ ଓ ଆମର ପ୍ରତ୍ୟେକଟି ହିନ୍ଦୁଭକ୍ତ ତ ଗଭୀର ଆସ୍ଥା ଓ ବିଶ୍ୱାସ ରଖୁଛୁ ଯେ ଆମ ଜଗନ୍ନାଥ ସର୍ବଶକ୍ତିମାନ । ଆପଣମାନେ ସୀମିତ ଶକ୍ତି ଦ୍ୱାରା ଜଗନ୍ନାଥଙ୍କୁ ରକ୍ଷା କରିବେ ବୋଲି କହି ଆମର ସେହି ବିଶ୍ୱାସକୁ ଆଘାତ କରୁଛନ୍ତି କାହିଁକି ?" ଆପଣମାନେ ଯଦି ଭାବୁଛନ୍ତି -ଜଗନ୍ନାଥ ଅସୁରକ୍ଷିତ ତେବେ ଏହା ଜଗନ୍ନାଥଙ୍କ ପ୍ରତି

ଅବିଶ୍ୱାସ ତଥା ଅପମାନ ନୁହେଁକି? ତେଣୁ ପ୍ରଶ୍ନ ଉଠୁଛି - ଜଗତର ନାଥ ଜଗନ୍ନାଥଙ୍କ ଠାରୁ ଅଧିକ ଶକ୍ତିଶାଳୀ କିଏ ?

ଇତିହାସ ପୃଷ୍ଠାରେ ମଧ୍ୟ ସେହିଭଳି କିଛି କାହାଣୀ ଉଲ୍ଲେଖ ଅଛି । ପ୍ରଥମ ଉଦାହରଣ - ମହାରାଜା ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବଙ୍କ ରାଜତ୍ୱ କାଳରେ କଟକ ସୁବାର ନାଏକ 'ନଜିମସୁଜା ଖାଁ' ଶ୍ରୀ ମନ୍ଦିର ଉପରେ ଆକ୍ରମଣ କରିବାକୁ ଆସୁଥିବା ଖବରପାଇ ମହାରାଜା ନିଜକୁ ଦୁର୍ବଳ ଓ ଅସହାୟ ମଣିଲେ । ସୁଜାଖାଁ ସହିତ ଯୁଦ୍ଧରେ ଜିତିବାର ସାହାସ ତାଙ୍କର ନଥିଲା । ସେ ଜଗନ୍ନାଥଙ୍କୁ ସୁଜାଖାଁ କବଳରୁ ରକ୍ଷା କରିବା ପାଇଁ ଏକ ହୀନ ଏବଂ ଅମାନବୀୟ ପନ୍ଥା ଚିନ୍ତାକଲେ । ସେ ଗୋଟିଏ ରୂପଜୀବି କେତକୀ ମାହାରୀଙ୍କୁ ଅନୁରୋଧ କଲେ ଯେ କେତକୀ ତୁମେ ହିଁ ଚାହିଁଲେ ଓଡ଼ିଶାର ମହାପ୍ରଭୁ ଜଗନ୍ନାଥ ଓ ତାଙ୍କ ଧନ ସମ୍ପତ୍ତିକୁ ରକ୍ଷା କରିପାରିବ । ମହାରାଜା ଦିବ୍ୟସିଂହଙ୍କ ନିର୍ଦ୍ଦେଶ ଅନୁସାରେ କେତକୀ ମାହାରୀ ସୁଜାଖାଁର ଶୟନ କକ୍ଷରେ ପ୍ରବେଶ କରି ନିଜର ସୁନ୍ଦର ଶରୀରଟି ତାକୁ ଅର୍ପଣ କରି ସୁଜାଖାଁକୁ କହିଲେ - ତୁମେ ଆମ ମନ୍ଦିର ଉପରେ ଆକ୍ରମଣ କରିବ ନାହିଁ । ସୁଜାଖାଁ କେତକୀଙ୍କ ସର୍ତ୍ତ ମାନି ତା'ର ରୂପ ଯୌବନ ଉପଭୋଗ କରି କଟକ ଫେରି ଯାଇଥିଲା । ମହାରାଜା ଦିବ୍ୟସିଂହ ଭୟରେ ନିଜ ରାଜଭବନ ତ୍ୟାଗକରି କୌଣସି ଅଜ୍ଞାତ ସ୍ଥାନରେ ଆତ୍ମଗୋପନ କରିଥିଲେ ।

ଇତିହାସରୁ ଦ୍ୱିତୀୟ ଉଦାହରଣ - ଉତ୍କଳର ଚଳନ୍ତି ବିଷ୍ଣୁ ବୋଲାଉଥିବା ଖୋର୍ଦ୍ଧା ଗଡର ଗଜପତି ଶ୍ରୀ ଶ୍ରୀ ରାମଚନ୍ଦ୍ର ଦେବ ନିଜର ଶାସନ କାଳରେ ଯୁଦ୍ଧରେ ପରାସ୍ତ ହୋଇ କଟକ ସୁବାର ନାଏକ 'ନଜିମ ତର୍କୀଖାଁ' ହାତରେ ବନ୍ଦୀ ହୋଇ ରହିଥିଲେ । ତର୍କୀଖାଁର ଭଉଣୀ ରଜିଆ ବିବି ରାମଚନ୍ଦ୍ର ଦେବଙ୍କୁ ପସନ୍ଦ କରି ବିବାହ କରିବ ବୋଲି ଭାଇକୁ କହିଲା । ତର୍କୀଖାଁ ଭଉଣୀର ଇଚ୍ଛାକୁ ସମ୍ମାନ ଦେଇ ରାମଚନ୍ଦ୍ର ଦେବଙ୍କୁ ଏହି ପ୍ରସ୍ତାବ ଦେଲା । ରାମଚନ୍ଦ୍ର ଦେବଙ୍କ ପାଖରେ ଏହି ପ୍ରସ୍ତାବକୁ ଅମାନ୍ୟ କରିବାର ସାହାସ ନଥିଲା । ସେ ନିଜର ଓ ଜଗନ୍ନାଥଙ୍କର ସୁରକ୍ଷା ପାଇଁ ରଜିଆ ବିବିକୁ ନିଜର ରାଣୀ ରୂପେ ସ୍ୱୀକାର କଲେ । ଏହାଦ୍ୱାରା ମହାରାଜାଙ୍କର ଦୋହରା ଫାଇଦା ହେଲା । ଜୀବନ ବଞ୍ଚିଲା ତା' ସହିତ ସୁନ୍ଦର ସ୍ତ୍ରୀଟିଏ ମିଳିଲା ।

 

ଉପରୋକ୍ତ ଦୁଇଟି ଉଦାହରଣରୁ ସ୍ପଷ୍ଟ ପ୍ରମାଣିତ ହେଉଛି – ମହାପ୍ରଭୁ ଜଗନ୍ନାଥଙ୍କ ଐଶ୍ୱରୀୟ ଶକ୍ତି ମହାରାଜାମାନଙ୍କୁ କୌଣସି ସାହାଯ୍ୟ କରି ନଥିଲା ବରଂ ଦୁଇଟି ସାମାନ୍ୟ ଅବଳା ନାରୀଙ୍କ ତ୍ୟାଗ ଯୋଗୁ ଜଗନ୍ନାଥଙ୍କ ସୁରକ୍ଷା ହୋଇପାରିଥିଲା ।

ଏଇଠି ପ୍ରଶ୍ନ ଉଠୁଛି- ମହାରାଜା ଦୁଇଜଣ କ'ଣ ଠାକୁରଙ୍କୁ ମାନୁ ନଥିଲେକି ? ଯଦି ମାନୁଥିଲେ ତା'ହେଲେ ମାନୁଥିବା ଭକ୍ତଙ୍କ ପାଇଁ କାଠତିଆରି ଠାକୁର କାହିଁକି ସଜୀବ ହୋଇ ଉଠିଲେ ନାହିଁ ? ଠାକୁର ନିଜର ଦୈବୀଶକ୍ତିର ଉପଯୋଗ କଲେନାହିଁ କାହିଁକି ? ଏହିଭଳି ତର୍କ କରୁଥିବା ଲୋକମାନଙ୍କୁ ଜଗନ୍ନାଥ ଭକ୍ତମାନେ 'ନାସ୍ତିକ' ବୋଲି କହିପାରନ୍ତି । ଆସନ୍ତୁ ଜାଣିବା କିଏ ପ୍ରକୃତରେନାସ୍ତିକ ?

ତାମିଲନାଡୁର ବିଶିଷ୍ଟ ହେତୁବାଦୀ ଓ ସମାଜସେବୀ ଇ.ଭି.ଆର ପେରିୟାରଙ୍କ ମତରେ - "ନାସ୍ତିକ ଅର୍ଥ ଯିଏ ଭଗବାନଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରୁଛି ବା ବିଶ୍ୱାସ କରୁନି । ଆପଣମାନେ ଯଦିଓ ନିଜର ଭଗବାନଙ୍କୁ ବିଶ୍ୱାସ କରୁଛନ୍ତି ଏବଂ ନିଜ ଢଙ୍ଗରେ ପୂଜା ଅର୍ଚ୍ଚନା କରୁଛନ୍ତି, ଆପଣମାନେ ଅନ୍ୟମାନଙ୍କ ଭଗବାନଙ୍କୁ ତ ବିଶ୍ୱାସ କରୁନାହାନ୍ତି କିମ୍ବା ସେମାନଙ୍କ ପଦ୍ଧତିରେ ପୂଜା ଅର୍ଚ୍ଚନା କରୁନାହାନ୍ତି । ତେଣୁ ସେମାନଙ୍କ ଦୃଷ୍ଟିରେ ଆପଣ ନାସ୍ତିକ । ଜଣେ ହିନ୍ଦୁ ବ୍ୟକ୍ତିପାଇଁ ମୁସଲମାନ ନାସ୍ତିକ । ଜଣେ ମୁସଲମାନ ପାଇଁ ଖ୍ରୀଷ୍ଟିୟାନ ନାସ୍ତିକ । ଜଣେ ଖ୍ରୀଷ୍ଟିୟାନ ପାଇଁ ଆପଣ ଦୁଇ ଜଣଯାକ ନାସ୍ତିକ । ଅର୍ଥାତ ଆମେସମସ୍ତେ ନାସ୍ତିକ ।"

ଏଇଠି ଆଉ ଗୋଟିଏ କଥା ବିଚାରଣୀୟ - ଦେଖା ଯାଉଛି ଯେ ଅନେକ ଲୋକ ଭଗବାନଙ୍କୁ ଅସ୍ୱୀକାର କରି ବା ପୂଜା ଅର୍ଚ୍ଚନା ନକରି ମଧ୍ୟ ବେଶ ସଫଳତା ଅର୍ଜନ କରୁଛନ୍ତି । ସେମାନେ କୌଣସି ମୂର୍ତ୍ତି ଭିତରେ ଦେବତ୍ୱ ରହିଛି ବୋଲି ମାନନ୍ତି ନାହିଁ । ସେମାନେ ପଥରକୁ ପଥର ବୋଲି ହିଁ ମାନନ୍ତି । ବାସ୍ତବରେ ଯେଉଁମାନେ ମାନବିକତା ଉପରେ ବିଶ୍ୱାସ ରଖି, ସମାଜର ନୀତି ନିୟମକୁ ମାନି କଠିନ ପରିଶ୍ରମ କରିଥାନ୍ତି, ସେହିମାନେ ହିଁ ସଫଳତା ପ୍ରାପ୍ତ କରିଥାନ୍ତି । ସେହିମାନଙ୍କୁ ତଥାକଥିତ ଭଗବାନଙ୍କ କୌଣସି ଆବଶ୍ୟକ ପଡେନାହିଁ । ସେଥିପାଇଁ ମାନିଲେ ଠାକୁର କହିବା ଏକ ମାନସିକ ଦିବାଳିଆପଣ ବିଚାର ।

*****<>*****

# ପିତୃଶ୍ରାଦ୍ଧ କେତେ ଜରୁରୀ ?

ହିନ୍ଦୁ ସମାଜରେ ମୃତ ବ୍ୟକ୍ତିଙ୍କ ନାମରେ ପିଣ୍ଡଦାନ, ଶ୍ରାଦ୍ଧ ଓ ତର୍ପଣ କରିବା ଏକ ପ୍ରାଚୀନ ପରମ୍ପରା । ଶ୍ରାଦ୍ଧର ମହତ୍ତ୍ୱ ଦର୍ଶାଇ ମନୁସ୍ମୃତି, ଗରୁଡ ପୁରାଣ ଆଦି ଅନେକ ଧର୍ମଗ୍ରନ୍ଥରେ ବିଭିନ୍ନ ବିଧି ଓ ସଂସ୍କାର ବର୍ଣ୍ଣନା କରାଯାଇଛି । ଶ୍ରାଦ୍ଧ କରିବାପାଇଁ ନିଜର ବାସସ୍ଥାନରୁ ଆରମ୍ଭ କରି ପୁରୀ, ଗୟା, ବାରଣାସୀ, ହରିଦ୍ୱାର, ଭଳି ଅନେକ ତୀର୍ଥସ୍ଥଳ ପର୍ଯ୍ୟନ୍ତ ଲମ୍ବା ତାଲିକାର ବର୍ଣ୍ଣନା କରାଯାଇଛି । ଆମ ଦେଶର ବାହାରେ ବିଦେଶର କୌଣସି ସ୍ଥାନର ଉଲ୍ଲେଖ ନାହିଁ । ହୁଏତ ସେତେବେଳେ ବିଦେଶରେ ରହିଥିବା କୌଣସି ତୀର୍ଥସ୍ଥଳ ମୁନି, ଋଷିମାନଙ୍କୁ ଜଣା ନଥିଲା କିମ୍ବା ବିଦେଶରେ କୌଣସି ତୀର୍ଥସ୍ଥଳ ହିଁ ନଥିଲା ।

ମହର୍ଷି ମନୁ ଗୃହସ୍ଥ ମଣିଷମାନଙ୍କ ପାଇଁ ପଞ୍ଚ ମହାଯଜ୍ଞ ପ୍ରତିଦିନ କରିବାପାଇଁ ନିର୍ଦ୍ଦେଶ ଦେଇଛନ୍ତି । ସେଥିମଧ୍ୟରୁ ଗୋଟିଏ ହେଉଛି 'ପିତୃଯଜ୍ଞ' । ଅର୍ଥାତ ପିତୃପୁରୁଷମାନଙ୍କୁ ସୁସ୍ୱାଦ ଖାଦ୍ୟ ପଦାର୍ଥ ଦ୍ୱାରା ସନ୍ତୁଷ୍ଟ କରିବା ଏବଂ ସେମାନଙ୍କୁ ମନେପକାଇ ସତ୍କାର କରିବା । ପିତୃପୁରୁଷଙ୍କୁ ଶ୍ରଦ୍ଧା ସହିତ ଯେଉଁ ସତ୍କାର କରାଯାଏ, ତାକୁ ଶ୍ରାଦ୍ଧ କୁହାଯାଏ ଏବଂ ତାହାଦ୍ୱାରା ପିତୃପୁରୁଷଙ୍କୁ ଯେଉଁ ତୃପ୍ତି ପ୍ରାପ୍ତ ହୁଏ, ତାକୁ ତର୍ପଣ ବୋଲି କହନ୍ତି । ଆନ୍ତରିକ ସ୍ନେହାଭାବକୁ ହିଁ ଆମେ ଶ୍ରଦ୍ଧା କହିପାରିବା ଏବଂ ଶ୍ରଦ୍ଧାରେ କରାଯାଉଥିବା କର୍ମକୁ ହିଁ ଶ୍ରାଦ୍ଧ ବୋଲି କହିପାରିବା ।

ଶାସ୍ତ୍ର ଅନୁସାରେ ପିତର (ପିତୃପୁରୁଷ) ପାଞ୍ଚ ପ୍ରକାର । 1.ଜନ୍ମ ଦେଇଥିବା ମାତା ଓ ପିତା, 2. ଯଜ୍ଞପବିତ ଦେଉଥିବା ଆଚାର୍ଯ୍ୟ, 3. ବିଶେଷ ଧରଣର ଜ୍ଞାନ ପ୍ରଦାନ କରୁଥିବା ଗୁରୁ, 4. ପ୍ରଜାମାନଙ୍କ ପାଇଁ ଖାଦ୍ୟ ପଦାର୍ଥ ବ୍ୟବସ୍ଥା କରୁଥିବା ବ୍ୟକ୍ତି, 5. ସଙ୍କଟ ବା ବିପଦରୁ ରକ୍ଷା କରୁଥିବା ସୁରକ୍ଷା କର୍ମଚାରୀ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି - ପିତୃଯଜ୍ଞରେ ଯେଉଁ 'ପିତର'ମାନଙ୍କ ପାଇଁ ଶ୍ରାଦ୍ଧ ଓ ତର୍ପଣ କରାଯାଏ, ସେମାନେ ଜୀବିତ ନା ମୃତ ?

ସାୟାଣାଚାର୍ଯ୍ୟଙ୍କ ଅନୁସାରେ 'ପିତର ପାଳୟିତାର' ଅର୍ଥ ଯେଉଁମାନେ ଆମର ପାଳନ ପୋଷଣ କରୁଛନ୍ତି, ସେହିମାନେ ହିଁ ପିତର । ପାଳନ, ପୋଷଣ କରୁଥିବା ପିତର ନିଶ୍ଚିତ ଭାବେ ଜୀବିତ ହେବା ଉଚିତ । ମୃତ ପିତର କେବେ କାହାରି ପାଳନ ପୋଷଣ କରି ପାରିବେନାହିଁ କିମ୍ବା କାହାରିଠାରୁ କିଛି ବି ଗ୍ରହଣ କରି ପାରିବେନାହିଁ ।

ମନୁସ୍ମୃତିରେ ଲେଖା ଅଛି - 'ଅହରହ ଶ୍ରାଦ୍ଧକୁର୍ଯ୍ୟାତ' ଅର୍ଥାତ ଗୃହସ୍ଥ ପ୍ରତିଦିନ ଶ୍ରାଦ୍ଧ କରିବା ଉଚିତ । ପ୍ରତିଦିନ ଶ୍ରାଦ୍ଧ କରିବା ଅର୍ଥ ଜୀବିତ ବ୍ୟକ୍ତିମାନଙ୍କର ସେବା ସତ୍କାର କରିବା । ଏଥିରୁ ପ୍ରମାଣିତ ହେଉଛି - ଶ୍ରାଦ୍ଧ କରିବାପାଇଁ ବର୍ଷର କୌଣସି ନିର୍ଦ୍ଦିଷ୍ଟ ଦିନ ବା ସମୟ ନାହିଁ ।

"ଶ୍ରାଦ୍ଧ"- ପିତା, ପିତାମହ (ଜେଜେବାପା), ପ୍ରପିତାମହ (ଜେଜେଙ୍କ ବାପା)ଙ୍କ ପାଇଁ ହିଁ କରାଯାଇଥାଏ । ଏଥିରୁ ବି ପ୍ରମାଣିତ ହେଉଛି - ଜୀବିତ ବ୍ୟକ୍ତିଙ୍କ ପାଇଁ ଶ୍ରାଦ୍ଧ ହେଉଛି । ମଣିଷର ଜୀବନ କାଳ ଭିତରେ ଏହି ତିନୋଟି ପିଢ଼ି ଗୋଟିଏ ପରିବାରରେ ବଞ୍ଚି ରହିବା ସମ୍ଭବ । ଧରନ୍ତୁ - ଗୋଟିଏ ଯୁବକ ପୁତ୍ରର ବୟସ 25 ବର୍ଷ, ତାଙ୍କ ବାପାଙ୍କ ବୟସ 50 ବର୍ଷ, ଜେଜେବାପାଙ୍କ ବୟସ 75 ବର୍ଷ ଏବଂ ତାଙ୍କ ବାପାଙ୍କ ବୟସ 100 ବର୍ଷ ହୋଇପାରେ । କେତେକ ସ୍ଥଳରେ ଏହାଠୁ ଅଧିକ ମଧ ହୋଇଥାଏ ।

ପିତୃଶ୍ରାଦ୍ଧ କରିବାପାଇଁ ଭାଦ୍ରମାସର ପୂର୍ଣ୍ଣମୀଠାରୁ ଆଶ୍ୱିନମାସର ଅମାବାସ୍ୟା ପର୍ଯ୍ୟନ୍ତ 15 ଦିନ ହିଁ ଉପଯୁକ୍ତ ବୋଲି କୁହାଯାଏ । ତାହା କେବଳ ମୃତ ପିତରମାନଙ୍କ ପାଇଁ ଉଦ୍ଦିଷ୍ଟ । ଆମେ ଟିକିଏ ଗଭୀର ଭାବେ ଯଦି ଚିନ୍ତା କରିବା ତା'ହେଲେ ଏହି ଶ୍ରାଦ୍ଧ ଜୀବିତ ଥିବା ପିତରମାନଙ୍କ ପାଇଁ ମଧ ଉଦ୍ଦିଷ୍ଟ ହୋଇପାରିବ ନାହିଁ କାହିଁକି ?

ପ୍ରାଚୀନ ଯୁଗରେ ବର୍ଷାଋତୁରେ ମୁନିଋଷିମାନେ ପାହାଡ଼ ଓ ଜଙ୍ଗଲରୁ ବାହାରିଆସି ଜନବସତିରେ ବାସ କରୁଥିଲେ । ସେମାନେ ଚତୁର୍ମାସ ବର୍ଷା ପ୍ରଭାବରୁ ନିଜକୁ ରକ୍ଷା କରିବାପାଇଁ ଜନବସତିରେ ରହୁଥିଲେ । ସେମାନେ ଜନବସତି ତ୍ୟାଗ

 

କରିବାର ପନ୍ଦର ଦିନ ପୂର୍ବରୁ ଗୃହସ୍ଥମାନେ ନାନାପ୍ରକାର ସୁସ୍ୱାଦ ଖାଦ୍ୟ ଭୋଜନ କରାଇ ବିଦାୟ କରୁଥିଲେ ।

ରାମାୟଣରେ ରାଜା ଦଶରଥଙ୍କ ଶ୍ରାଦ୍ଧ କରୁଥିବା କଥା ଉଲ୍ଲେଖ ଅଛି । "ଋଷୟା ରାଜସଂଘିଶ୍ଚ ଭବଦଭୟାମଭି ପୂଜିତଃ (ବାଳକାଣ୍ଡ 72/8) ଅର୍ଥାତ ଆପଣ ଋଷି ଓ ରାଜାମାନଙ୍କର ବିଶେଷ ରୂପେ ସତ୍କାର କଲେ, ମୁଁ ନିଜ ଘରକୁ ଯାଇ ସମସ୍ତ ଶ୍ରାଦ୍ଧ କର୍ମ କରିବି । ଏଥିରୁ ପ୍ରମାଣିତ ହେଉଛି - ଋଷି, ମୁନି ଏବଂ ପୂଜ୍ୟ ଗୁରୁଜନଙ୍କ ସତ୍କାର କର୍ମ ହିଁ ପ୍ରକୃତ ଶ୍ରାଦ୍ଧ ଅଟେ ।

ଭଗବତ ଗୀତାରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ କହିଛନ୍ତି - "ଆଚାର୍ଯ୍ୟ, ପିତର, ପୁତ୍ରାସ୍ତଥୈବଚ, ପିତାମହ: ମାତୁଳା: ପୌତ୍ରା: ଶ୍ୟାଲା: ସମ୍ବଧୀନସ୍ତଥା: (1/38)" ଅର୍ଥାତ ଆଚାର୍ଯ୍ୟ, ପିତର, ପୁତ୍ର ଆଦି ଯେଉଁମାନଙ୍କୁ ନେଇ ଆମେ ରାଜ୍ୟ ଭୋଗର ସୁଖ ପାଇଁ ଯୁଦ୍ଧ କରିବାକୁ ଆପଣ କହୁଛନ୍ତି, ସେହିମାନେ ତ ଏଠାରେ ଜୀବନର ମୋହ ତ୍ୟାଗକରି ଯୁଦ୍ଧ କରିବାକୁ ଠିଆ ହୋଇଛନ୍ତି ।" ଏଠାରେ ମଧ୍ୟ 'ପିତର' ଶବ୍ଦ ଜୀବିତ ବ୍ୟକ୍ତିଙ୍କ ପାଇଁ ବ୍ୟବହାର ହୋଇଛି ।

ମୃତବ୍ୟକ୍ତିଙ୍କ ପାଇଁ ପିତୃଶ୍ରାଦ୍ଧକୁ ସମର୍ଥନ କରୁଥିବା ଲୋକମାନେ କହନ୍ତି - ମୃତ ପିତୃପୁରୁଷଙ୍କ ନାମରେ ବ୍ରାହ୍ମଣଙ୍କୁ ଭୋଜନ କରାଇଲେ କ୍ଷତି କଅଣ ? ଏହି ବାହାନାରେ ପୂର୍ବପୁରୁଷଙ୍କୁ ମନେପକାଇ କିଛି ଦାନ କରି ପୁଣ୍ୟ ଅର୍ଜନ ହୋଇଯାଏ । ସେମାନଙ୍କର ଏହି ଯୁକ୍ତି କେତେଦୂର ସତ୍ୟ ଆମେ ଟିକିଏ ବୌଦ୍ଧିକ ସ୍ତରରେ ବିଚାର କଲେ ଜଣାପଡୁଛି - ଏହାଦ୍ୱାରା ଧାର୍ମିକ, ନୈତିକ, ଆର୍ଥିକ ଓ ସାମାଜିକ ସ୍ତରରେ ଅନେକ ଦୋଷ ରହୁଛି ।

ଆସନ୍ତୁ ବିଚାର କରି ଦେଖିବା -

1. ଏହାଦ୍ୱାରା ମାନବିକ ଧର୍ମର ମର୍ଯ୍ୟାଦା ନଷ୍ଟ ହେଉଛି । ଗୋଟିଏ ଭ୍ରମାତ୍ମକ ପରମ୍ପରା ବଞ୍ଚି ରହୁଛି । ବୃଦ୍ଧ ମାତା ପିତାଙ୍କୁ, ଯେଉଁଘରେ ଭଲକରି ଖାଇବାକୁ ମୁଠେ ଦିଆଯାଉନାହିଁ, ସେମାନଙ୍କ ଜୀବିତ ଅବସ୍ଥାରେ ସେବା ସତ୍କାର ବଦଳରେ ତିରସ୍କାର ଓ ଲାଞ୍ଛନା ଦିଆଯାଉଥାଏ, ସେମାନଙ୍କର ମୃତ୍ୟୁ ପରେ ଧନ ଖର୍ଚ୍ଚକରି ବ୍ରାହ୍ମଣମାନଙ୍କୁ

 

ଭୋଜନ, ଦାନ, ଦକ୍ଷିଣା ଦେଇ ନିଜର ଶ୍ରଦ୍ଧା ଦେଖେଇ ହେଉଥିବା ଗୃହସ୍ଥମାନଙ୍କୁ ଠିକ କରୁଛନ୍ତି ବୋଲି ଆମେ କିପରି କହିବା?

2. ଦାନ କରିବା ଖରାପ କଥା ନୁହେଁ । କିନ୍ତୁ ଦାନ କାହାକୁ ଦିଆଯିବା ଉଚିତ ସେଇଟା ମହତ୍ୱପୂର୍ଣ୍ଣ । କଥାରେ ଅଛି - "ଅପାତ୍ରରେ ଦାନ ଦେବା ପୁଣ୍ୟ ନୁହେଁ" ଆମେ ଯଦି ପିତୃଶ୍ରାଦ୍ଧ ବେଳେ କେତେକ ଅଳସୁଆ, କାମଚୋର ବ୍ୟକ୍ତିଙ୍କୁ ଗୋଦାନ, ଭୂଦାନ, ସ୍ୱର୍ଣ୍ଣଦାନ, ବସ୍ତ୍ରଦାନ, ଅନ୍ନଦାନ ଆଦି ଦେବା ତେବେ ଆମେ ସେମାନଙ୍କର ଅଳସୁଆ ପ୍ରବୃତ୍ତିକୁ ସମର୍ଥନ କରୁଛନ୍ତି । ସତରେ ସାହାଯ୍ୟ ପାଇବା ଯୋଗ୍ୟ ଆହୁରି ଅନେକ ଗରିବ, ଅସହାୟ, ଅସୁସ୍ଥ ମଣିଷ ଆମ ଚାରିପାଖରେ ଅଛନ୍ତି, ସେମାନଙ୍କୁ ଦାନ କରାଯାଉ । ବ୍ରାହ୍ମଣଙ୍କୁ ଦାନକଲେ ପିତୃପୁରୁଷଙ୍କ ପାଖରେ ପହଞ୍ଚିବ କିନ୍ତୁ ଗରିବଙ୍କୁ ଦେଲେ ବେକାରଯିବ ଭଳି ଭିତିହୀନ ବିଶ୍ୱାସ ହିଁ ପିତୃଶ୍ରାଦ୍ଧର ମୂଳକାରଣ । ସେଥିପାଇଁ ଆଜି ଭାରତରେ ପ୍ରାୟ ପଚାଶ ଲକ୍ଷରୁ ଅଧିକ ସାଧୁ, ସନ୍ୟାସୀ କେବଳ ଦାନଦକ୍ଷିଣା ପାଇ କୌଣସି ଉତ୍ପାଦନମୂଳକ କାମନକରି,ଐଶ୍ୱର୍ଯ୍ୟରେ ଜୀବନଯାପନ କରୁଛନ୍ତି ।

3. ଯେ କୌଣସି କର୍ମକୁ କରିବା ପୂର୍ବରୁ ତାହା କେତେ ଦୂର ଉପଯୋଗୀ ଓ ଜରୁରୀ ଚିନ୍ତା ନକରି କେବଳ ପରମ୍ପରା ପାଳନ କରିବା ପାଇଁ ବାଧ୍ୟତା ମୂଳକ ଭାବେ କଲେ ତାହା ଶୁଦ୍ଧ କର୍ମ ନୁହେଁ । ଅଯଥା ଧନହାନୀ ପ୍ରଣପୀଡା ହେବା କଥା ।

4. ଯଦି ଆମ ପିତୃପୁରୁଷଙ୍କୁ ଭୋଜନ କରାଇବା ନିହାତି ଆବଶ୍ୟକ ତେବେ ଅଶ୍ୱିନମାସର ଏହି ପନ୍ଦର ଦିନ ଭିତରେ ଥରେ ହିଁ କାହିଁକି? ବର୍ଷ ସାରା ସେମାନେ କ'ଣ ଏହି ଗୋଟିଏ ଦିନର ଖାଦ୍ୟଦ୍ୱାରା କାମ ଚଳାଉଛନ୍ତି ? ଦ୍ୱିତୀୟରେ କେବଳ ବ୍ରାହ୍ମଣଙ୍କୁ ଭୋଜନ କରାଇବା କାହିଁକି ? ଅନ୍ୟ ଭୋକିଲା ମଣିଷକୁ କାହିଁକି ନୁହେଁ ?

ଗରୁଡ ପୁରାଣରେ ଯେଉଁ ତଥାକଥିତ ନର୍କର ବର୍ଣ୍ଣନା ହୋଇଛି ତାହା ପଢିଲେ ଯେ କୌଣସି ଲୋକ ବୁଝିପାରିବ କେତେ ଅବାନ୍ତର କଥା ସବୁ ଲେଖା ହୋଇଛି । ସେଠାରେ ଗୋଟିଏ ଯମପୁର ଅଛି, ଯମଦୂତମାନେ ପୃଥିବୀରୁ ମୃତ ବ୍ୟକ୍ତିମାନଙ୍କୁ ଧରି ନିଅନ୍ତି । ସେଠାରେ ବ୍ୟକ୍ତିଙ୍କ ପାପ ଅନୁସାରେ ଦଣ୍ଡ ଦିଅନ୍ତି । କାହାକୁ ଗରମ ତେଲ କଡେଇରେ ପକାଇ ପକୋଡ଼ି ଭଳି ଭାଜନ୍ତି । କାହାକୁ

ବିଷଧର ସର୍ପ ଦ୍ୱାରା ଦଂଶନ କରାନ୍ତି । କାହାକୁ ହିଂସ୍ର ପଶୁମାନଙ୍କ ଦ୍ୱାରା ନିର୍ଯ୍ୟାତିତ କରନ୍ତି । ଏମିତି ଅନେକ ଗାଲ୍ଲଗପର ଅବତାରଣା କରାଯାଇଛି ।

ଏଇଠି ପ୍ରଶ୍ନ ଉଠୁଛି - (କ) ଶରୀର ତ ଏଇଠି ନଷ୍ଟ ହୋଇଯାଉଛି, ଆତ୍ମାର ତ କୌଣସି ରୂପ ନାହିଁ । ଯମଦୂତମାନେ ମୃତ ବ୍ୟକ୍ତିର କ'ଣଟା ନେଇଯାଇ ଦଣ୍ଡ ଦିଅନ୍ତି ? (ଖ) ସେଠାରେ ଯଦି ନିଆଁ (କେଉଁ ଜାତୀୟ ନିଆଁ ?), ତେଲ (କେଉଁ ଜାତୀୟ ତେଲ?), କଡେଇ (କେଉଁ ଧାତୁର କଡେଇ ?), ବିଷଧର ସର୍ପ, ହିଂସ୍ର ପଶୁ ସବୁଅଛି, ତେବେ ଯମପୁର ନିଶ୍ଚୟ ପୃଥିବୀ ଭଳି ଗୋଟିଏ ସ୍ଥାନ ହୋଇଥିବ । ତା'ର ଅବସ୍ଥିତି କେଉଁଠି ? ଆଜି ପର୍ଯ୍ୟନ୍ତ ସାରା ଦୁନିଆର ଅନେକ 'ସେଟଲାଇଟ' ଆକାଶରେ ଘୁରୁଛନ୍ତି, କେହି ବି ଯମପୁରକୁ ଦେଖି ପାରୁନାହାନ୍ତି କାହିଁକି ?

ଆମ ଧର୍ମୀୟ ସଂସ୍କୃତିରେ ଦେବୀ ଦେବତାଙ୍କ ମୃତ୍ୟୁ ଦିବସ ପାଳନର ପରମ୍ପରା ନାହିଁ । ଜନ୍ମ ଦିବସ ପାଳନର ପରମ୍ପରା ଅଛି ଯଥା :- କୃଷ୍ଣ ଜନ୍ମାଷ୍ଟମୀ, ରାମନବମୀ, ବଳରାମଙ୍କଜନ୍ମ, ପର୍ଶୁରାମ ଜୟନ୍ତୀ । ତେଣୁ ପିତୃଶ୍ରାଦ୍ଧର ଆବଶ୍ୟକତା କାହିଁକି ? ଦେବୀ ଦେବତା ଯଦି ଜନ୍ମ ହୋଇଥିଲେ, ସେମାନେ କେବେ ତ ମୃତ୍ୟୁ ବି ଲଭିଥିବେ । କାହାରି ମୃତ୍ୟୁ ଦିବସ ନାହିଁ କାହିଁକି ?

ବର୍ତ୍ତମାନ ଆମେ ଶାସ୍ତ୍ର ଜଗତରୁ ବାହାରି ମୁକ୍ତ ମନରେ କିଛି ପ୍ରଶ୍ନର ଉତ୍ତର ଖୋଜିବା । ପିତୃଶ୍ରାଦ୍ଧର ସମର୍ଥକମାନେ କହିବେ - "ଏହାସବୁ ବିତର୍କ" କିନ୍ତୁ ସଚେତନ ପାଠକେ ବିଚାର କରନ୍ତୁ - ନିମ୍ନ ଲିଖିତ ପ୍ରଶ୍ନ ଓ ଉତ୍ତର ଗୁଡ଼ିକ ତର୍କସଙ୍ଗତ କି ନୁହେଁ ?

(କ) ପ୍ରଶ୍ନ:- ପିତର ନାମଟି କାହାର? ଶରୀରର ନା ଆତ୍ମାର? ଅବା ଆତ୍ମା ସହିତ ଶରୀରର?

ଉତ୍ତର :- ଯଦି ପିତର ଶରୀରର ନାମ ହୁଏ, ତେବେ ମୃତ୍ୟୁ ପରେ ଶରୀରର ତ ଏଇଠି ନଷ୍ଟ ହୋଇଯାଏ । ମୃତ୍ୟୁ ବରଣ କରିଥିବା ବ୍ୟକ୍ତିଟି ଆମର ପିତର ହୋଇ ରହିଲା ନାହିଁ । ଆମେ ଶ୍ରାଦ୍ଧ ଦେବା କାହାକୁ ? ଯଦି ଆତ୍ମାକୁ ପିତର ବୋଲି ମାନିବା ତେବେ ଶାସ୍ତ୍ର ତ କହୁଛି- "ଆତ୍ମା ଅମର , ଅଜର, ତା'ର ଜନ୍ମ ନାହିଁ କି ମରଣ ନାହିଁ । "ସେ ନିର୍ଲିପ୍ତ । ସେ କାହାରି ବାପା ନୁହେଁ କି ମାଆ ନୁହେଁ । ତାହେଲେ ଆମେ

କେଉଁ ପିତରକୁ ଶ୍ରାଦ୍ଧ ଦେଉଛୁ? ଯଦି ଶରୀର ସହିତ ଆସୁଥିବା ବ୍ୟକ୍ତିଙ୍କୁ ଆମେ ପିତର ବୋଲି ମାନିବା ତେବେ ତେବେ ଆମ ଘରେ ବଞ୍ଚି ରହିଥିବା ପିତା, ପ୍ରପିତା ଆଦି ଆମର 'ପିତର' । ମଣିଷ ଶରୀର ତ୍ୟାଗ କଲାପରେ ତ ଆମର ପିତର ମଧ ଚାଲିଗଲା । ଯେଉଁ ବ୍ୟକ୍ତି ଶରୀର ତ୍ୟାଗ କଲା ସେ ପିତୃଧର୍ମ ପାଳନ କରିବ କିପରି? ତେଣୁ ପିତୃ ଧର୍ମ ନଥିଲେ ପିତୃଶ୍ରାଦ୍ଧର ଔଚିତ୍ୟ କେଉଁଠି ?

(ଖ) ପ୍ରଶ୍ନ:- ଶ୍ରାଦ୍ଧ ଗ୍ରହଣ କରିବାକୁ ପିତରମାନେ ଶରୀର ସହିତ ଆସନ୍ତି ନା ଶରୀର ବିନା ଆସନ୍ତି? ଯଦି ଶରୀର ସହିତ ଆସୁଥିବେ, ଆମେ ତାଙ୍କୁ ନିଶ୍ଚୟ ଦେଖି ପାରିଥାନ୍ତେ । ଦ୍ବିତୀୟତଃ ଯଦି ସେମାନେ ଶରୀର ସହିତ ଆସୁଥିବେ ତେବେ ଆମେ ତାଙ୍କୁ ସିଧା ଭୋଜନ ନ ଦେଇ ବ୍ରାହ୍ମଣଙ୍କୁ ଦେଉଛନ୍ତି କାହିଁକି ?

(ଗ) ମୃତକବ୍ୟକ୍ତି ତାଙ୍କ ଶରୀରକୁ ତ୍ୟାଗ କରି ଚାଲିଗଲାପରେ ତାଙ୍କର ପରିବାରଜନ ମୃତ ଶରୀରକୁ ନଷ୍ଟ କରି ଦିଅନ୍ତି । ମୃତକ ଶ୍ରାଦ୍ଧ ଦିନ ଭୋଜନ ଖାଇବାପାଇଁ କେଉଁ ଶରୀରରେ ପ୍ରବେଶ କରିବେ? କାରଣ ହାତ ଓ ମୁହଁ ବିନା ତ ଖାଦ୍ୟ ଖାଇବା ସମ୍ଭବ ନୁହେଁ । ଆଉ ଯଦି ପିତର କେବଳ ଆଖିରେ ଦେଖି ବା ନାକରେ ଶୁଙ୍ଘି ତୃପ୍ତ ହୋଇଯାଆନ୍ତି, ତେବେ ଆମେ ବ୍ରାହ୍ମଣଙ୍କୁ ଭୋଜନ କରାଇବା କ'ଣ ଦରକାର ? ଆମଘରେ ସମସ୍ତେ ବସି ପିତରଙ୍କୁ ମନେପକାଇ ପିତରଙ୍କ ପ୍ରିୟ ଖାଦ୍ୟ ଖାଇ ଦେଲେ ସବୁ କାମ ହୋଇଯିବ ।

(ଘ) ଜଣେ ବ୍ୟକ୍ତି ଖାଇଲେ ଯଦି ଅନ୍ୟ ଜାଗାରେ ରହୁଥିବା ବ୍ୟକ୍ତିଙ୍କ ପେଟ ଭର୍ତ୍ତି ହୋଇଯାଏ, ତେବେ ଓଡିଶାରୁ ଟ୍ରେନରେ ବାଙ୍ଗାଲୋର ଯାଉଥିବା ବ୍ୟକ୍ତି ସାଙ୍ଗରେ ଖାଦ୍ୟ ନେଇଯିବା କିମ୍ବା ବାଟରେ କିଣି ଖାଇବା କ'ଣ ଦରକାର? ବାପା ଯାଉଥିବା ବେଳେ ପୁଅ ଖାଇଦେଲେ, ବାପାଙ୍କ ଭୋକ ମେଣ୍ଟିଯିବ ।

(ଚ) ପ୍ରଶ୍ନ - ମୃତବ୍ୟକ୍ତି ଜଣକ ବର୍ତ୍ତମାନ ତଥାକଥିତ ସ୍ବର୍ଗଲୋକରେ ଅଛି ନା ନର୍କଲୋକରେ ଅଛି? ବ୍ରାହ୍ମଣ କହିପାରିବେକି ? ସ୍ବର୍ଗଲୋକ ଓ ପରଲୋକରେ କ'ଣ ଖାଦ୍ୟପଦାର୍ଥର ଅଭାବ ଥାଏ କି? ଯେଉଁ ବ୍ୟକ୍ତି ସବୁବେଳେ ନିଶାଦ୍ରବ୍ୟ ଯଥା : ମଦ, ଗଞ୍ଜେଇ, ଭାଙ୍ଗ ଆଦି ଖାଇ ଖାଇ ମରିଛି, ତା'ର ତୃପ୍ତି ପାଇଁ ଆମେ ବ୍ରାହ୍ମଣଙ୍କୁ ଯଦି ସେହିସବୁ ଦ୍ରବ୍ୟ ଦେବା, ସେ ଖାଇବେକି ? ମୃତବ୍ୟକ୍ତିର ଅନ୍ୟ କୌଣସି ଜନ୍ମ

ହୋଇସାରିଥିବ ନିଶ୍ଚୟ । କାରଣ ଶାସ୍ତ୍ର କହୁଛି ପ୍ରାଣୀ 84 ଲକ୍ଷ ଯୋନୀରେ ଜନ୍ମ ଗ୍ରହଣ କରିଥାଏ । ଧରନ୍ତୁ - ମୃତ ବ୍ୟକ୍ତି ଶାକାହାରୀ ଥିଲେ ଏବଂ ବର୍ତ୍ତମାନ ସେ ବଣର ବାଘ ହୋଇ ଜନ୍ମ ହୋଇଥିବ । ତାଙ୍କ ପୁତ୍ର ବ୍ରାହ୍ମଣକୁ ଶାକାହାର ହିଁ ଦେବ । ବାପା ତ ବାଘ ହୋଇଗଲେଣି, ତେଣୁ ବ୍ରାହ୍ମଣ ଏହିଖାଦ୍ୟକୁ ଆମିଷ କରି ପଠାଇବକି ? ଧରନ୍ତୁ- ଜଣେ ବ୍ୟକ୍ତି ଅତ୍ୟଧିକ ପାପ କରିଥିବାରୁ ସେ ପର ଜନ୍ମରେ କୀଟ ହୋଇ ଜନ୍ମ ହୋଇଛି । ସେ କେବଳ ନର୍ଦ୍ଦମାର ମଳ ଜାତୀୟ ଖାଦ୍ୟ ହିଁ ଖାଉଛି । ବ୍ରାହ୍ମଣ ତା' ପାଇଁ ମଳ ପଠାଇ ପାରିବକି ?

(ଛ) ସାଧାରଣତଃ କାଉ ପକ୍ଷୀକୁ ସେମାନଙ୍କର 'ପିତର' ଙ୍କ ପ୍ରତୀକ ବା ସ୍ୱରୂପ ବୋଲି ବିଶ୍ୱାସ କରୁଛନ୍ତି । ସେଥିପାଇଁ ଶ୍ରାଦ୍ଧ କରିବା ସମୟରେ ପିଣ୍ଡ ବାଢ଼ିଦେଇ, ଅପେକ୍ଷା କରାଯାଏ କାଉମାନେ କେତେବେଳେ ଆସି ପିଣ୍ଡ ଖାଇବେ ? କାଉ ଆସି ପିଣ୍ଡ ଖାଇଦେଲେ ସେମାନଙ୍କର ପିତୃପୁରୁଷ ଖାଇଦେଲେ ଭାବି ଖୁସି ହୋଇଯାନ୍ତି । କାଉପକ୍ଷୀ ସହିତ ତାଙ୍କର ପିତୃପୁରୁଷଙ୍କ କିଭଳି ସମ୍ପର୍କ ସେମାନେ ହିଁ ଜାଣନ୍ତି ।

(ଜ) ହିନ୍ଦୀରେ ଗୋଟିଏ ପ୍ରବାଦ ଅଛି - "ଦାନେ ଦାନେ ମେଁ ଲିଖା ହୈ ଖାନେୱାଲାକା ନାମ" ଅର୍ଥାତ ସୃଷ୍ଟିକର୍ତ୍ତା ସମସ୍ତ ଜୀବଜନ୍ତୁଙ୍କ ପାଇଁ ଖାଦ୍ୟପଦାର୍ଥର ବ୍ୟବସ୍ଥା କରି ରଖିଛନ୍ତି । ଯିଏ ଯେଉଁ ଅବସ୍ଥାରେ, ଯେଉଁଠି ଥାଉ, ପରମେଶ୍ୱର ତାକୁ ଖାଦ୍ୟ ଯୋଗାଇଦେବେ । ଆଉ ଗୋଟିଏ ପ୍ରବାଦ ବି ଅଛି - "ଭଗବାନ କିସିକୋ ଭୁଖା ସୁଲାତା ନହିଁ, ଭୁଖା ଉଠାତା ହୈ" ଏହା ଯଦି ସତ ତେବେ ଆମେ ଭଗବାନଙ୍କ ଏହି ସୁବ୍ୟବସ୍ଥାରେ ହସ୍ତକ୍ଷେପ କରିବା କ'ଣ ଦରକାର ?

ଶେଷରେ ଆମେ ଏତିକି ବୁଝିପାରିଛୁ ଯେ ଜୀବିତ କାଳ ମଧ୍ୟରେ ଯଦି ଆମର ଗୁରୁଜନମାନଙ୍କର ଉଚିତ ସେବା ଓ ସତ୍କାର କରିବା, ଶ୍ରଦ୍ଧା ଓ ସମ୍ମାନ ଦେବା ସେଇଟା ହିଁ ହେବ ପ୍ରକୃତ 'ପିତୃଶ୍ରାଦ୍ଧ' । ତାଙ୍କର ମୃତ୍ୟୁ ପରେ ଲୋକ ଦେଖାଣିଆ ଆଡମ୍ବର କରି, ଅଯଥା ଧନ, ସମୟ ଓ ଶକ୍ତି ନଷ୍ଟକରିବା ଆଦୌ ବୁଦ୍ଧିମାନର କାର୍ଯ୍ୟ ନୁହେଁ । ଯାହା ବୈଜ୍ଞାନିକ ଦୃଷ୍ଟିକୋଣରୁ ତର୍କସଙ୍ଗତ ନୁହେଁ, ସେହିଭଳି ରୁଢିବାଦୀ ପରମ୍ପରାକୁ ତ୍ୟାଗ କରିଦେଲେ କିଛି ବି କ୍ଷତି ହେବନି ବରଂ ଲାଭ ହେବ ।

*****<>*****

# ଶ୍ରେଷ୍ଠ କିଏ :ଏକ ବିତର୍କ

ଭଗବାନ ଓ ମଣିଷ ଭିତରେ ଶ୍ରେଷ୍ଠ କିଏ ? ଏହାର ଉତ୍ତର ପାଇଁ ଅନେକ ତର୍କ ବିତର୍କ ଲାଗିରହିଛି । ମୁନି ଋଷି ଓ ଧର୍ମଗୁରୁମାନଙ୍କ ଦ୍ୱାରା ରଚିତ ଧର୍ମଗ୍ରନ୍ଥ ଅନୁସାରେ ବିଶ୍ୱାସ କରାଯାଉଛି - "ଯେହେତୁ ଭଗବାନ ମଣିଷକୁ ସୃଷ୍ଟି କରିଛନ୍ତି ତେଣୁ ଭଗବନ ହିଁ ଶ୍ରେଷ୍ଠ ।" ଧିରେ ଧିରେ ମଣିଷର ବିକାଶ ସହିତ ବିଚାରଧାରାରେ ପରିବର୍ତ୍ତନ ଘଟିଥିବାରୁ ପୂର୍ବ ବିଶ୍ୱାସ ଉପରେ ପ୍ରଶ୍ନଚିହ୍ନ ଲାଗିଯାଇଛି । ବୈଜ୍ଞାନିକ ବିଚାରଧାରା ଅନୁସାରେ ଦୁନିଆର ମଣିଷ ସୃଷ୍ଟି ହେବ ପୂର୍ବରୁ ଭଗବାନ ନଥିଲେ । ପରବର୍ତ୍ତୀ କାଳରେ ମଣିଷର କଳ୍ପନାରୁ ତଥାକଥିତ ଭଗବାନ ନାମକ ସତ୍ତା ବା ଶକ୍ତିର ସୃଷ୍ଟି ହୋଇଛି । ଏହି ତଥ୍ୟକୁ ପ୍ରମାଣିତ କରିବା ପାଇଁ ବିଭିନ୍ନ ସମୟରେ ବିଭିନ୍ନ ଦେଶରେ ଯୁକ୍ତିବାଦୀ, ହେତୁବାଦୀ, ବୁଦ୍ଧିଜୀବୀ ତର୍କ ପ୍ରସ୍ତୁତ କରିଛନ୍ତି । ସେହିସବୁ ତର୍କ ବୈଜ୍ଞାନିକ ପ୍ରଣାଳୀରେ ସତ୍ୟ ସିଦ୍ଧ ହେଉଥିବାରୁ ଧିରେ ଧିରେ ଜନମାନସରେ ହେତୁବାଦ ବା ନିରୀଶ୍ୱରବାଦର ସମର୍ଥନ ବୃଦ୍ଧିପାଉଛି । କେବଳ ହିନ୍ଦୁ ଧର୍ମରେ ନୁହେଁ ଦୁନିଆର ସମସ୍ତ ଧର୍ମରେ ଦ୍ୱିମତର ସଂଘର୍ଷ ଲାଗିରହିଛି । ଏଇଠି ଆମେ ମଧ୍ୟ କିଛି ପ୍ରାମାଣିକ ତଥ୍ୟକୁ ନେଇ ଭଗବାନ ଓ ମଣିଷର ଶ୍ରେଷ୍ଠତ୍ୱ ଉପରେ ଚର୍ଚ୍ଚା କରିବା ।

"ବିଶ୍ୱାସେ ମିଳଇ ହରି ତର୍କେ ବହୁ ଦୂର" ଏହି ପ୍ରଚଳିତ ପ୍ରବଚନକୁ ବୌଦ୍ଧିକ ସ୍ତରରେ ସମସ୍ତେ ମାନିବାକୁ ରାଜି ନାହାନ୍ତି । ସେମାନଙ୍କ ଯୁକ୍ତି ହେଉଛି - "ଚଳନ୍ତି ଜୀବନରେ ପ୍ରତ୍ୟେକ କାମକୁ କରିବା ପୂର୍ବରୁ ଭଲକରି ବୁଝିଶୁଝି ତର୍କସଙ୍ଗତ ଲାଗିବା ପରେ ହିଁ କାମଟି କରାଯାଏ । ଯେଉଁଠି ସନ୍ଦେହ ଥାଇ କାମ କରାଯାଏ, ସେଇଠି ସଫଳତା ମିଳି ନଥାଏ କିମ୍ବା ସଫଳତା ମିଳିବା ସମ୍ଭାବନା କମ ଥାଏ । ସେହିଭଳି ଈଶ୍ୱରଙ୍କ ସତ୍ତା ଉପରେ ଯଦି ସନ୍ଦେହ ରହୁଛି, ତା' ଉପରେ ତର୍କ କରିବା ଉଚିତ ନୁହେଁ କାହିଁକି?"

ତଥାକଥିତ ଭଗବାନ ଯଦି ସୃଷ୍ଟିକୁ ସୂର୍ଯ୍ୟ, ଚନ୍ଦ୍ର, ତାରା, ଗ୍ରହ, ମାଟି, ପାଣି, ପବନ, ବୃକ୍ଷଲତା,ପର୍ବତ, ନଦୀ, ସମୁଦ୍ର ଏବଂ ନାନା ଜାତିର ଜୀବଜନ୍ତୁ ଦେଇଛନ୍ତି ।

ମଣିଷକୁ ଜୀଇଁବା ପାଇଁ ଉପରୋକ୍ତ ସମସ୍ତ ଉପାଦାନ ଉପଲବ୍ଧ କରାଇଛନ୍ତି, ତେବେ କିଏ କାହିଁକି ସେ ଗୁଡିକ ଉପରେ ସନ୍ଦେହ କରିବ ? ଆଦିମ କାଳରୁ ସୂର୍ଯ୍ୟ, ଚନ୍ଦ୍ର, ଆକାଶ, ମାଟି, ପାଣି, ପବନ ଓ ବୃକ୍ଷଲତା ସାହାଯ୍ୟରେ ମଣିଷ ଜୀଇଁ ରହିଥିଲା କିନ୍ତୁ ସୁଖ ଓ ସୁବିଧାରେ ବଞ୍ଚିରହିବା ପାଇଁ ପ୍ରକୃତି ପ୍ରଦତ୍ତ ବସ୍ତୁ ଗୁଡିକ ଯଥେଷ୍ଟ ନଥିଲା । ସେ ବହୁତ କଷ୍ଟ ଭୋଗ କରୁଥିଲା । ଖରା, ବର୍ଷା ଓ ଶୀତର ମାତ୍ରା ଅଧିକ ହେଲେ ମଣିଷ ଶରୀର ସହ୍ୟ କରିପାରୁ ନଥିଲା । ସେଥିପାଇଁ ମଣିଷ ନିଜକୁ ସୁରକ୍ଷିତ କରିବାର ବିଭିନ୍ନ ଉପାୟ ଚିନ୍ତାକଲା । ଏହି ଚିନ୍ତା କରିବା ପ୍ରକ୍ରିୟାରେ ବିକାଶ ଘଟିଥିବାରୁ ଆଜିର ମଣିଷ ନିଜ ଶରୀରକୁ କେବଳ ସୁରକ୍ଷିତ କରିନାହିଁ ବରଂ ଅନେକ ସୁଖ ଓ ସୁବିଧାର ମଜା ନେଉଛି । ଗ୍ରୀଷ୍ମ ତାପରୁ ରକ୍ଷା ପାଇବାପାଇଁ ଆଜି କେହି ରାସ୍ତା ଉପରେ ବସି ସୂର୍ଯ୍ୟକୁ ପ୍ରାର୍ଥନା କରୁନି- "ହେ ସୂର୍ଯ୍ୟଦେବ ମୋତେ ବହୁତ କଷ୍ଟ ହେଉଛି, ତୁମେ ତାପମାତ୍ରାକୁ କମ କରିଦିଅ ।" ସେ ଯଥାଶୀଘ୍ର ନିଜର ଘର ଭିତରେ ପଶି ବିଜ୍ଞାନ ଉଦ୍ଭବ କରିଥିବା ବିଜୁଳୀ ପଙ୍ଖା କିମ୍ବା ଏ.ସି ଚଳାଇ ଥଣ୍ଡା ଅନୁଭବ କରେ । କାରଣ ସେ ଜାଣି ପାରିଛି - ସୂର୍ଯ୍ୟ ମୋର ପ୍ରାର୍ଥନା ଶୁଣି ଥଣ୍ଡା ହେବନାହିଁ । ସେହିଭଳି ଅନ୍ୟାନ୍ୟ ପ୍ରାକୃତିକ କଷ୍ଟରୁ ନିଜକୁ ସୁରକ୍ଷିତ କରିବା ପାଇଁ ବିଭିନ୍ନ ଆଧୁନିକ ସାଧନ ଯୋଗାଡ଼ କରିପାରିଛି ।

ଆଦିମାନବ ପାଇଁ ଅନ୍ୟ ଉପାୟ ନଥିବାରୁ ସେ ତଥାକଥିତ ଭଗବାନଙ୍କୁ ହିଁ ନିଜର ସୁରକ୍ଷା ପାଇଁ ବିଶ୍ୱାସର ସହିତ ପୂଜା ଓ ପ୍ରାର୍ଥନା କରୁଥିଲା । ପୂଜା ଓ ପ୍ରାର୍ଥନା ଦ୍ୱାରା କିଏ କେତେ ସୁରକ୍ଷା ପାଉଥିଲା ସେସବୁର ବିଶଦ ବିବରଣୀ ଆମକୁ ଇତିହାସରୁ ମିଳୁଛି ।  ଗତ କିଛି ଶହ ବର୍ଷ ତଳର ମଣିଷ ସମାଜ ଏବଂ ଆଜିର ମଣିଷ ସମାଜ ଭିତରେ ଯେଉଁ ଉଲ୍ଲେଖ ଯୋଗ୍ୟ ପରିବର୍ତ୍ତନ ଘଟିଛି, ତାହାକୁ କିଏ ବା ଅସ୍ୱୀକାର କରିବ ? ଯଦି ବା କେହି ତାଙ୍କ ବିଶ୍ୱାସକୁ ଠେସ ଲାଗୁଛି ବୋଲି ଅସ୍ୱୀକାର କରିବ, ତେବେ ତାକୁ ଅନ୍ୟମାନେ ମାନସିକ ରୋଗୀ କିମ୍ବା ପାଗଳ ବୋଲି ହିଁ କହିବେ ।

ମଣିଷ ସ୍ଥଳଦେଶରେ ନିଜର ଦୁଇଟି ଗୋଡ଼ ସାହାଯ୍ୟରେ ଘଣ୍ଟାଏ ସମୟରେ ଅତି ବେଶୀରେ ଚାରି ପାଞ୍ଚ କିଲୋ ମିଟର ରାସ୍ତା ହିଁ ଅତିକ୍ରମ କରିପାରେ

 

। ବେଶୀ ଦୂରକୁ ଯିବାକୁ ଚାହିଁଲେ କିମ୍ବା ଶୀଘ୍ର ଯିବାକୁ ଚାହିଁଲେ ଭଗବାନ ପ୍ରଦତ୍ତ କୌଣସି ସାଧନ ନାହିଁ । ଆକାଶ ମାର୍ଗରେ ତ ମଣିଷ ନିଜର ହାତ ଓ ଗୋଡ଼ ସାହାଯ୍ୟରେ ଆଦୌ ଗତି କରି ପାରିବ ନାହିଁ । ଉପରୋକ୍ତ ସମସ୍ୟାର ସମାଧାନ ପାଇଁ ମଣିଷ ଚିନ୍ତା କଲା ଜଳ, ସ୍ଥଳ ଓ ଆକାଶରେ ଦୀର୍ଘ ପଥକୁ, କମ ସମୟରେ ଏବଂ ସୁରକ୍ଷିତ ଭାବେ କିପରି ଅତିକ୍ରମ କରି ପାରିବା? ସେଥିପାଇଁ ଧିରେ ଧିରେ ଅନେକ ଯାନବାହନର ଉଦ୍ଭାବନ ହେଲା । ସାଇକେଲ ଠାରୁ ଆରମ୍ଭ କରି, ନୌକା, ପାଣିଜାହାଜ, ଉଡ଼ାଜାହାଜ ଓ ରକେଟ ପର୍ଯ୍ୟନ୍ତ ଯାତାୟାତ ଯାନ ତିଆରି ହୋଇଛି । ଏସବୁ ମଣିଷ ହିଁ କୌଣସି ଦେବୀ ଦେବତାଙ୍କ ସାହାଯ୍ୟ ନନେଇ ନିଜର ବୁଦ୍ଧି କୌଶଳ ପ୍ରୟୋଗ କରି ତିଆରି କରିପାରିଛି । ଆମ ଦେବୀ ଦେବତା ତ କେବଳ ବିଭିନ୍ନ ପଶୁ ପକ୍ଷୀଙ୍କ ଉପରେ ବସି ଯାତାୟାତ କରୁଥିଲେ ।

ମଣିଷ ବଞ୍ଚିବା ପାଇଁ କେତେକ ମୌଳିକ ଉପାଦାନ ଯଥା: ପାଣି, ପବନ, ଆଲୋକ ଓ ଖାଦ୍ୟ ଯଦି ଭଗବାନ ଦେଇଛନ୍ତି, ତା'ସାହିତ ପ୍ରାକୃତିକ ବିପର୍ଯ୍ୟୟ ଯଥା: ବାତ୍ୟା, ବନ୍ୟା, ଭୂମିକମ୍ପ, ମହାମାରୀ ଆଦି ମଧ ସେହି ଭଗବାନ ହିଁ ଦେଇଛନ୍ତି । ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ଘଟିବା ପୂର୍ବରୁ ସୂଚନା ପାଇ ସତର୍କ ହେବା କିମ୍ବା ବିପର୍ଯ୍ୟୟ ଘଟିବା ପରେ କ୍ଷୟ କ୍ଷତିରୁ ରକ୍ଷା ପାଇବାର ଉପାୟମାନ ମଣିଷ ହିଁ ଉଦ୍ଭାବନ କରିଛି । ଅନ୍ୟଥା ଦେବୀ ଦେବତାମାନେ ତ ସବୁବେଳେ ନିରବ ଦର୍ଶକ ସାଜି ମନ୍ଦିରମାନଙ୍କରେ ସବୁ ଦେଖୁଛନ୍ତି । ବିପର୍ଯ୍ୟୟ ଯୋଗୁ ମୃତ ବ୍ୟକ୍ତିଙ୍କ ପରିବାରକୁ ମଣିଷମାନଙ୍କ ସରକାର ଆର୍ଥିକ ସାହାଯ୍ୟ ଦେଇଥାନ୍ତି । ଶାରୀରିକ କ୍ଷତି ପାଇଥିବା ବ୍ୟକ୍ତିଙ୍କୁ ସୁସ୍ଥ କରିବାପାଇଁ ଡାକ୍ତରମାନେ ରାତି ଦିନ ପରିଶ୍ରମ କରୁଛନ୍ତି । ତଥାକଥିତ ଭଗବାନଙ୍କ ପାଖରେ ତ ସେଭଳି କିଛି ସାହାଯ୍ୟ କରିବାର ସୁବିଧା ନାହିଁ । ଯିଏ ମଲା ସିଏ ଗଲା । ଯିଏ ଅପାଙ୍ଗ ହେଲା, ସିଏ ପୂର୍ବଜନ୍ମରେ କରିଥିବା ପାପର ଦଣ୍ଡ ଭୋଗ କରିବ କହି ଧାର୍ମିକମାନେ କ୍ରୁର ତାଚ୍ଛଲ୍ୟ କରିଥାନ୍ତି ।

ଆଉ ଗୋଟିଏ କଥା ବୁଝା ପଡୁନି ଯେ ଯେଉଁ ମୌଳିକ ଉପାଦାନ ସବୁ ମଣିଷକୁ ଭଗବାନ ଉପଲବ୍ଧ କରାଇଛନ୍ତି ବୋଲି ମଣିଷ ରାତି ଦିନ କୃତଜ୍ଞତା ଜଣାଉଛି, ସେହିସବୁ ଉପାଦାନ ତ ଦୁନିଆର ସମସ୍ତ ପ୍ରାଣୀ ଜଗତ ମଧ ଉପଭୋଗ

କରୁଛନ୍ତି । ମଣିଷଙ୍କୁ ଛାଡି ଅନ୍ୟ କେହି ତ କେବେ ଦେବୀ ଦେବତାଙ୍କୁ ପୂଜା ପ୍ରାର୍ଥନା କରି କୃତଜ୍ଞତା ଜଣାଉନାହାନ୍ତି । ତେଣୁ ପ୍ରଶ୍ନ ଉଠୁଛି- ସେମାନେ ସେହିଭଳି କୌଣସି ଧାର୍ମିକ ଆଡମ୍ବର ନକରି ଯଦି ସମସ୍ତ ପ୍ରାକୃତିକ ସାଧନ ଉପଭୋଗ କରୁଛନ୍ତି, ମଣିଷ କାହିଁକି ଏତେ ଭୟ କରୁଛି? ଧାର୍ମୀକମାନେ ଏହାର ଉତ୍ତରରେ କୁହନ୍ତି - "ମଣିଷମାନେ ପୂଜା କରୁଛନ୍ତି ବୋଲି ମୋକ୍ଷ ପ୍ରାପ୍ତକରି ସ୍ୱର୍ଗରେ ଯାଇ ରହନ୍ତି, ପଶୁମାନେ ଯାଇ ପାରନ୍ତିନାହିଁ ।" ଏହି ଯୁକ୍ତି କେତେ ଦୂର ସତ୍ୟ, ସେହିମାନେ ହିଁ ଜାଣନ୍ତି? ନାସ୍ତିକମାନେ ମଧ୍ୟ ଭଗବାନଙ୍କୁ ପୂଜା ପ୍ରାର୍ଥନା କରୁନାହାନ୍ତି ତଥାପି ସବୁ ଉପାଦାନ ଉପଭୋଗ କରୁଛନ୍ତି, ସେମାନଙ୍କ ପାଇଁ ତ ଭଗବାନ ରାଗିଯାଇ ପାଣି, ପବନ ଓ ଆଲୋକ ଯୋଗାଇବାରେ କାର୍ପଣ୍ୟତା ଦେଖାଉ ନାହାନ୍ତି । ହଁ ! ହୁଏତ ନାସ୍ତିକମାନଙ୍କୁ ସ୍ୱର୍ଗରେ ପୂରେଇ ଦେବନି ।

ଭଗବାନଙ୍କ ପାଖରେ କୃତଜ୍ଞତା ପ୍ରକଟ କରିବା ପଛରେ ଆହୁରି ଏକ ବଳିଷ୍ଠ ଯୁକ୍ତି ଦିଅନ୍ତି ଯେ ଭଗବାନ ମଣିଷକୁ, ପଶୁମାନଙ୍କ ଠାରୁ ବିଶେଷ ଓ ଉତ୍କୃଷ୍ଟ ଧରଣର ଅଙ୍ଗପ୍ରତ୍ୟଙ୍ଗ ଦେଇଛନ୍ତି । ମଣିଷକୁ ଏକ ବିଶେଷ ଧରଣର ମସ୍ତିଷ୍କ ଦେଇଛନ୍ତି ଏବଂ ତାକୁ ଖପୁରି ଭିତରେ ସୁରକ୍ଷିତ ରଖିଛନ୍ତି । ଯାହା ଦ୍ୱାରା ମଣିଷ ପଶୁ ପକ୍ଷୀମାନଙ୍କ ଅପେକ୍ଷା ଅନେକ କାମ କରିପାରୁଛି ।

ଏହି ତର୍କରେ ବିଶେଷ କିଛି ଦମ ନାହିଁ । କାରଣ ମଣିଷର ପାଞ୍ଚ ଗୋଟି ଇନ୍ଦ୍ରିୟ ଭଳି ଅନ୍ୟାନ୍ୟ ପ୍ରାଣୀଙ୍କ ତିନି, ଚାରି ଓ ପାଞ୍ଚ ଗୋଟି ଇନ୍ଦ୍ରିୟ ରହିଛି । ମଣିଷର ମସ୍ତିଷ୍କ ନିଶ୍ଚୟ ବିଶେଷ ଧରଣର କିନ୍ତୁ ସୁରକ୍ଷିତ ନୁହେଁ । କୌଣସି ଦୁର୍ଘଟଣା ଯୋଗୁ ମୁଣ୍ଡରେ ସାମାନ୍ୟ ଆଘାତ ଲାଗିଲେ ମସ୍ତିଷ୍କଟି ନଷ୍ଟ ହୋଇଯାଉଛି । ଏଥିପାଇଁ ମଣିଷ ମସ୍ତିଷ୍କକୁ ସୁରକ୍ଷିତ ରଖିବାପାଇଁ 'ହେଲମେଟ' ତିଆରି କରିଛି । ଛାତିର ପଞ୍ଜରା ହାଡ଼ ଭିତରେ ହୃଦୟ ନାମକ ମହତ୍ତ୍ୱପୂର୍ଣ୍ଣ ଅଙ୍ଗକୁ ଭଗବାନ ସିନା ରଖି ଦରିଛନ୍ତି କିନ୍ତୁ ଏହା ଆଦୌ ସୁରକ୍ଷିତ ନୁହେଁ । ମଣିଷ କବଚ ଓ ବୁଲେଟ ପ୍ରୁଫ ଜ୍ୟାକେଟ ଆଦି ଉଦ୍ଭାବନ କରିଥିବାରୁ ଯୁଦ୍ଧ ସମୟରେ ଖଣ୍ଡ ଚୋଟ ଓ ଗୁଳି ଆଘାତରୁ ମଣିଷ ବଞ୍ଚିଯାଏ ।

 

ଭଗବାନ ତିଆରି କରିଥିବା ମସ୍ତିଷ୍କ ଏକ ସମୟରେ କେବଳ ଗୋଟିଏ ବା ଦୁଇଟି କଥା ଚିନ୍ତା କରିପାରେ । ମଣିଷ ତିଆରି କରିଥିବା କମ୍ପ୍ୟୁଟରରେ ଯେତିକି ତଥ୍ୟ ଷ୍ଟୋର କରିହେଉଛି ସେତିକି ତଥ୍ୟ ଭଗବାନ ତିଆରିକରିଥିବା ମଣିଷ ମୁଣ୍ଡରେ ଷ୍ଟୋର କରିବା ସମ୍ଭବ ନୁହେଁ ।

ଭଗବାନ ତିଆରି କରିଥିବା ଆଖି କେବଳ ଆଲୁଅରେ ଏବଂ ଏକ ନିର୍ଦ୍ଦିଷ୍ଟ ଦୂରତା ପର୍ଯ୍ୟନ୍ତ ହିଁ ଦେଖି ପାରୁଛି କିନ୍ତୁ ମଣିଷ ତିଆରିକରିଥିବା ଯନ୍ତ୍ର ଦ୍ୱାରା ଅନେକ ଦୂର ପର୍ଯ୍ୟନ୍ତ ଓ ଅନ୍ଧାରରେ ମଧ୍ୟ ଦେଖି ହେଉଛି ।

ମଣିଷର କାନ ଦୁଇଟିର ଶ୍ରବଣ ଶକ୍ତି ମଧ୍ୟ ସୀମିତ । ମଣିଷ ତିଆରି ଟେଲିଫୋନ, ମୋବାଇଲ ଦ୍ୱାରା ଦୁନିଆର ଯେ କୌଣସି କୋଣରୁ ମଣିଷମାନେ କଥା ହୋଇପାରୁଛନ୍ତି । ମଣିଷର କଣ୍ଠସ୍ୱର ମଧ୍ୟ ସୀମିତ, ସେ ଏକାଥରେ ବହୁତ ଲୋକଙ୍କ ପାଖରେ ନିଜର ବକ୍ତବ୍ୟ ରଖି ପାରିବେ ନାହିଁ କିନ୍ତୁ ମଣିଷ ତିଆରି ଲାଉଡ଼ ସ୍ପିକର ଯନ୍ତ୍ର ଦ୍ୱାରା ଏକ ସମୟରେ ଲକ୍ଷ ଲକ୍ଷ ଲୋକମାନେ ଗୁରୁମାନଙ୍କର ପ୍ରବଚନ ଓ ନେତାମାନଙ୍କର ଭାଷଣ ଶୁଣିପାରୁଛନ୍ତି । ଆଜିର ଚିକିତ୍ସା ବିଜ୍ଞାନକୁ କିଏ ବା ବ୍ୟବହାର ନ କରୁଛି ? ରୋଗ ହେଲେ ଯିଏ ଯେତେ ଈଶ୍ୱର ବିଶ୍ୱାସୀ ହେଉପଛେ ପ୍ରଥମେ ଡାକ୍ତରଙ୍କ ପାଖକୁ ଦୌଡ଼ି ଯାଇ ଚିକିତ୍ସା କରାଇବେ । ମଜା କଥା ହେଉଛି ଯେ ଚିକିତ୍ସା ଚାଲିଥିବା ପର୍ଯ୍ୟନ୍ତ ଡାକ୍ତରଙ୍କ ପଛରେ ପଡ଼ିଥିବେ, ରୋଗ ଭଲ ହୋଇଯିବା ପରେ ତଥାକଥିତ ଭଗବାନଙ୍କୁ ଧନ୍ୟବାଦ ଜଣାଇବେ ।

ଭଗବାନ ଯେଉଁ ହାତ ଦୁଇଟି ଦେଇଛନ୍ତି ତାହାରି ସାହାଯ୍ୟରେ ମଣିଷ କେତେ ବା ଭାରି ଓଜନ ଉଠାଇ ପାରିବ ? ମଣିଷ ତିଆରି କରିଥିବା କ୍ରେନ ଦ୍ୱାରା ହଜାର କିଲୋ ଓଜନ ମଧ୍ୟ ଉଠା ଯାଇପାରୁଛି ।

ମଣିଷ ନିଜ ହାତରେ ପେନଧରି , କାଗଜରେ ପ୍ରତିଘଣ୍ଟାରେ କେତେ ଗୋଟି ପୃଷ୍ଠା ଲେଖିପାରିବ ? ଆଜି ପ୍ରିଣ୍ଟିଂଙ୍ଗ ମେସିନ ଦ୍ୱାରା ପ୍ରତି ମିନିଟରେ ଶହ ଶହ ପୃଷ୍ଠା ଲେଖା ଯାଇ ପାରୁଛି ।

ଭଗବାନ ମଣିଷକୁ ଦୁଇଟି ଗୋଡ଼ ଦେଇଛନ୍ତି ଚାଲିବା ପାଇଁ ମଣିଷ ବୁଢା ହୋଇଗଲେ ଗୋଡ ଦୁଇଟା ମଧ୍ୟ ଦୁର୍ବଳ ହୋଇ ପଡନ୍ତି ନିଜ ଶରୀରର ଓଜନ

ଉଠାଇ ଚାଲିବାକୁ ମଧ୍ୟ ଅସମର୍ଥ ହୋଇପଡେ । ସାମାନ୍ୟ ଦୁର୍ଘଟଣା ଘଟିଲେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଯାଏ ।

ଭଗବାନଙ୍କ ତିଆରି ବସ୍ତୁ ଗୁଡିକରେ ଏତେସବୁ ଦୋଷ ଦୁର୍ବଳତା ରହୁଥିବାରୁ ମଣିଷ ଆଜି ମଧ୍ୟ ସମସ୍ୟାମାନଙ୍କୁ ନେଇ ସଂଘର୍ଷ କରୁଛି ।

ଆଉ ଏକ ବିଶେଷ ପ୍ରଶ୍ନ - ଭଗବାନଙ୍କ ଦ୍ୱାରା ସୃଷ୍ଟି ହୋଇ ଥିବା ପାଣି ଓ ପବନ ଅଶୁଦ୍ଧ ହୋଇ ଯାଉଛି କାହିଁକି ? ପାଣିରେ ଓ ବାୟୁରେ ଭଗବାନଙ୍କ ତିଆରି ଅନ୍ୟ ଗ୍ୟାସ ମିଶି ପ୍ରଦୂଷଣ ହୋଇଯାଉଛି କାହିଁକି? ମଣିଷ ଦେହରୁ ନିଃର୍ଗତ ହେଉଥିବା ମଳ, ମୂତ୍ର, ଝାଳ ଆଦି ପ୍ରାୟ ଦୁର୍ଗନ୍ଧ ଯୁକ୍ତ କାହିଁକି? ଏସବୁ ସମସ୍ୟାର ସମାଧାନ ପାଇଁ ମଣିଷକୁ ସ୍ୱତନ୍ତ୍ର ଭାବେ ଚିନ୍ତା କରିବାକୁ ପଡୁଛି । ପାଠକେ ବର୍ତ୍ତମାନ ବିଚାର କରନ୍ତୁ - "କିଏ ଶ୍ରେଷ୍ଠ ?

*****<>*****

ମୁଁ ଭଗବାନ କହୁଛି – "ମୁଁ ସବୁ କିଛି କରିପାରେ ଏବଂ ମୁଁ ସବୁକିଛି ଜାଣେ । ମୋ' ଇଚ୍ଛା ବିନା ଗଛରପତ୍ର ବି ହଲିବନାହିଁ । ତଥାପି ମୁଁ ସବୁବେଳେ ତୁମକୁ ପରୀକ୍ଷା କରୁଛି, ତୁମେ କ'ଣ କରୁଛ ? ଯଦିଓ ମୁଁ ତୁମକୁ ସୃଷ୍ଟି କରିଛି ଏବଂ ମୁଁ ଆଗରୁ ହିଁ ଜାଣେ ତୁମେ କ'ଣ କରିବ ? ତଥାପି ମୁଁ ତୁମର ମନ୍ଦକର୍ମ ପାଇଁ ଦଣ୍ଡ ଦେବି । ଯଦିଓ ସେହି କର୍ମ ମଧ୍ୟ ମୋର ହିଁ ନିର୍ଦ୍ଧାରିତ କର୍ମ ।" ବିଚାରା ମଣିଷ ଏହା ଶୁଣି ଦ୍ୱନ୍ଦ୍ୱରେ ପଡି ଭାବୁଛି – "ମୁଁ କଅଣ କରିବି ?

# ଭୟରୁ ଜାତ ଭିତ୍ତିହୀନ ବିଶ୍ୱାସ

ମଣିଷର ମାନସିକ ଭୟ ବା ଡର ଯୋଗୁ ଅନେକ ପ୍ରକାରର ଭିତ୍ତିହୀନ ବିଶ୍ୱାସ ସୃଷ୍ଟି ହୋଇଥାଏ । ଏହା ପଛରେ ଥିବା ମନସ୍ତାତ୍ତ୍ୱିକ କାରଣ ଅନେକ ଅଛି । କିନ୍ତୁ ଆମେ ଏଠାରେ କିଛିଉଦାହରଣ ଉଲ୍ଲେଖ କରିବା ।

ଘଟଣାଟି ହେଉଛି - ମୁଁ ଯେତେବେଳେ ହାଇସ୍କୁଲରେ ପଢୁଥିଲି, ମାଟ୍ରିକ ବୋର୍ଡ ପରୀକ୍ଷା ପ୍ରାୟ ଚାରିଦିନ ପୂର୍ବରୁ ମୋ'ନାମରେ ଆସିଥିବା ଗୋଟିଏ ପୋଷ୍ଟକାର୍ଡ ପାଇଲି । ପୋଷ୍ଟକାର୍ଡରେ ପ୍ରେରକର ଠିକଣା ନଥିଲା । ଲେଖାଥିଲା - "ପ୍ରିୟ ବନ୍ଧୁ, ଶ୍ରୀ ଶ୍ରୀ ବାବା ଜଟେଶ୍ୱରଙ୍କ ସ୍ୱପ୍ନ ଆଦେଶ ହୋଇଛି, ତାଙ୍କର ଚମତ୍କାରୀ ପ୍ରଭାବରେ ବିଦ୍ୟା, ଧନ ଓ ସମ୍ମାନ ବୃଦ୍ଧି ହୋଇଥାଏ । ନିମ୍ନଲିଖିତ ଶ୍ଳୋକ (ଶ୍ଳୋକଟି କେଉଁ ଶାସ୍ତ୍ରରୁ ଉଦ୍ଧୃତ ଓ କ'ଣ ତା'ର ଅର୍ଥ ମୁଁ ବୁଝି ପାରି ନଥିଲି) ଯେଉଁ ବ୍ୟକ୍ତି ଦଶଜଣଙ୍କୁ ଚିଠି ଲେଖି ପଠାଇପାରିବ, ସେ ନିଶ୍ଚିତ ଭାବେ ବାବାଙ୍କ କୃପା ଲାଭ କରିବ । ଯେଉଁ ବ୍ୟକ୍ତି ଚିଠିକୁ ଅବମାନନା କରିବ ତା'ର କ୍ଷତି ହେବା ସୁନିଶ୍ଚିତ ।"

ଶ୍ଳୋକଟି ମୋର ମନେନାହିଁ ଏବଂ ଏଠାରେ ଲେଖିବା ଆବଶ୍ୟକ ମଧ୍ୟ ନାହିଁ । ଚିଠି ଖଣ୍ଡିକ ପଢି ମୋ ମନରେ ଏକ ଅହେତୁକ ଭୟ ସୃଷ୍ଟି ହୋଇଥିଲା ଯେ ଚିଠି ନଲେଖିଲେ କାଳେ ମୁଁ ପରୀକ୍ଷାରେ ଫେଲ ହୋଇଯିବିକି? କିନ୍ତୁ ଆଗକୁ ପରୀକ୍ଷା ପାଇଁ ପ୍ରସ୍ତୁତିର ବ୍ୟସ୍ତତା ଯୋଗୁ ପୋଷ୍ଟକାର୍ଡ କିଣିଆଣି ଦଶଖଣ୍ଡ ଚିଠି ଲେଖିବା ସମ୍ଭବ ହେଲାନାହିଁ । ପରୀକ୍ଷା ସରିଲେ ଚିଠିଲେଖି ପଠାଇଦେବି ବୋଲି ମାନସିକ କରି ଚିଠିଟିକୁ କେଉଁ ଏକ ବହି ଭିତରେ ରଖିଦେଲି । ଭଲରେ ପରୀକ୍ଷା ସରିଗଲା । ଛୁଟିରେ ଗାଆଁକୁ ଯାଇ ପାଠ ପଢାରୁ ମୁକ୍ତି ମିଳିଥିବାରୁ ଖୁସିରେ ମୌଜ ମସ୍ତିରେ ଦିନ କଟିଲା ।  ଚିଠି କଥା ଆଉ ମନେ ରହିଲାନାହିଁ । ପ୍ରାୟ ଦୁଇମାସ ପରେ ପରୀକ୍ଷା ଫଳ ଖବର କାଗଜରେ ପ୍ରକାଶ ପାଇଲା । ମୁଁ ସେକେଣ୍ଡ ଡିଭିଜନରେ ପାଶ କରିଥିବା ଦେଖି ଅତ୍ୟନ୍ତ ଖୁସି ହେଲି । କଲେଜରେ ଜଏନ କରିବା ପୂର୍ବରୁ ପୁରୁଣା ବହିପତ୍ର ସଜାଡୁଥିବା ବେଳେ ଚିଠିଟି ମୋ ଦୃଷ୍ଟିରେ ପଡିଲା । ଏଥର କିନ୍ତୁ ମୋ ମନରେ ଆଉ ଭୟ ରହିଲା ନାହିଁ, କାରଣ ମୁଁ କାହାରିକୁ ଚିଠି ନଲେଖି ମଧ୍ୟ

 

ପରୀକ୍ଷାରେ ଭଲ ନମ୍ବର ରଖି ପାଶ କରିଥିଲି । ଚିଠିଟିକୁ ଖଣ୍ଡ ଖଣ୍ଡ କରି ଚିରି ଫିଙ୍ଗି ଦେଲି । ମୋ ଭଳି କ'ଣ ଅନ୍ୟମାନେ ସେପରି କରିଥିବେ ? ସେମାନେ ହୁଏତ ଦଶ ଖଣ୍ଡ ଚିଠି ଲେଖି ପଠାଇଥିବେ ।

ଆଜିକାଲି ମୋବାଇଲରେ ମଧ୍ୟ ସେହିଭଳି ଏସ.ଏମ.ଏସ.ଆସୁଛି - "ଏହାକୁ ଏଗାର ଜଣଙ୍କ ପାଖକୁ ପଠାଇଲେ ତୁମ ବାପାଙ୍କ ଉନ୍ନତି ହେବ ବା କିଛି ଭଲ ଖବର ପାଇବ । ନପଠାଇଲେ ତାଙ୍କର କିଛି ନା କ୍ଷତିହେବ ବା ତୁମେ ଅଶୁଭ ଖବରପାଇବ ।" ଦୁର୍ବଳମନା ଯୁବକ-ଯୁବତୀମାନେ ଭୟକରି ତୁରନ୍ତ ଏସ,ଏମ,ଏସ କରିଦିଅନ୍ତି । ଧିରେ ଧିରେ ସେହି ଏସ.ଏମ.ଏସ.ଟି ଏଗାରରୁ ଏଗାରଶହ ବା ଏଗାରହଜାର ଲୋକଙ୍କ ପାଖକୁ ପହଞ୍ଚି ଯାଉଛି । କାହାରି କିଛି ଉନ୍ନତି ହେଉ କି ନହେଉ ମୋବାଇଲ କମ୍ପାନୀର ଲକ୍ଷ ଲକ୍ଷ ଟଙ୍କାର ଲାଭ ଅବଶ୍ୟ ହୋଇଯାଉଛି । ତା'ସାହିତ ଏକ ଭିତିହୀନ ବିଶ୍ୱାସ ମଧ୍ୟ ପ୍ରସାର ହୋଇଯାଉଛି ।

ମୋର ଜଣେ ବନ୍ଧୁ ଉଚ୍ଚ ଶିକ୍ଷିତ ଏବଂ ବୁଦ୍ଧିମାନ ବ୍ୟକ୍ତି । ସେ ଥରେ ମୋତେ ପଚାରିଲେ - "ତୁମେ କହୁଛ, ଭଗବାନ ନାମକ କୌଣସି ସତ୍ତା ନାହିଁ । ତେବେ କୌଣସି ବିପଦ ବେଳେ ଆପେ ଆପେ 'ହେ ଭଗବାନ' ବୋଲି ମୁହଁରୁ ବାହାରୁଛି କାହିଁକି ? ଦ୍ୱିତୀୟରେ ଭଗବାନ ନାହାନ୍ତି ବୋଲି ଭାବିବାକୁ ମୋତେ ଡର ଲାଗୁଛି କାହିଁକି ?"

ମୁଁ କହିଲି - କୌଣସି ଦୁଃଖ, ବିଷାଦ, ବା ଜଟିଳ ସମସ୍ୟା ଜଡିତ ମାନସିକ ଅଶାନ୍ତି ବେଳେ ଭଗବାନଙ୍କ ନାମ ମନେ ପଡିଯିବାଟା ଭଗବାନଙ୍କ ଅସ୍ତିତ୍ୱ ଅଛି ବୋଲି ପ୍ରମାଣିତ କରୁ ନାହିଁ । ଅନେକ ଲୋକଙ୍କ ମୁହଁରୁ ହଠାତ ଶାରୀରିକ ପୀଡା କିମ୍ବା  ମାନସିକ ଦୁଶ୍ଚିନ୍ତା ସମୟରେ 'ଓଃ ମାଆ' ଭଳି ଶବ୍ଦ ମଧ୍ୟ ବାହାରି ପଡୁଛି । ସେତେବେଳେ  ମାଆ ପାଖରେ ନଥିଲେ କିମ୍ବା ମରି ଯାଇଥଲେ ମଧ୍ୟ ମୁହଁରୁ ମାଆ ଶବ୍ଦ ବାହାରିଯାଏ । ଏହାର ଅର୍ଥ ନୁହେଁ ଯେ  ଆମେ ମାଆକୁ ଜୀବିତ ଅଛି ବୋଲି ଭାବୁ କିମ୍ବା ବିପଦ ବେଳେ ସେ ହିଁ ଆସି ଆମକୁ ସାହାଯ୍ୟ କରିବ ବୋଲି ଡାକ ପକାଉ । ଏହାର ମନସ୍ତାତ୍ତ୍ୱିକ କାରଣ ହେଉଛି - "ମାଆଙ୍କ ପାଖରୁ ଆମେ ପିଲାଟି ଦିନରୁ ଯେଉଁ ସ୍ନେହ, ମମତା ଓ ସୁରକ୍ଷା ପାଇ ଆସିଛୁ, ତାହା ଆମ

ମନ ଓ ମସ୍ତିଷ୍କରେ ଏଭଳି ପ୍ରଭାବ ପକାଇଛି ଯେ ଦୁଃଖ ସମୟରେ ମଧ୍ୟ ଆମକୁ ସେହି ସ୍ନେହ ସଂରକ୍ଷଣ କଥା ମନେ ପଡ଼ିଯାଏ ।"

ମାଆ ମନେ ପଡିଯିବା କିମ୍ବା ଚିତ୍କାର ରୂପରେ ମାଆକୁ ସମ୍ବୋଧନ କରିବାର କାରଣ ତ ସହଜରେ ବୁଝା ପଡୁଛି । ଏହା ହେଉଛି, ମାଆ ଓ ସନ୍ତାନ ମଧ୍ୟରେ ଗଢି ଉଠିଥିବା ସ୍ନେହ, ସାନିଧ ଓ ମାତୃ ଛାୟାର ସ୍ମୃତି । କିନ୍ତୁ ଭଗବାନଙ୍କ କୌଣସି ଅନୁଭବ ବା ସ୍ମୃତି ତ କାହାରି ପାଖରେ ନଥାଏ । ସେଥିପାଇଁ ବିପଦବେଳେ ଭଗବାନଙ୍କ ନାମ ମନେ ପଡ଼ିବା ଏକ ଅଲଗା ମନ୍ତାତ୍ତ୍ୱିକ ପାଠ । ଅନେକ କାରଣ ମଧ୍ୟରୁ ପ୍ରଧାନ କାରଣ ହେଉଛି - "ବାଲ୍ୟକାଳରୁ ଭଗବାନଙ୍କ ସମ୍ବନ୍ଧରେ ଶୁଣି ଆସିଥିବା ମହିମା ମଣ୍ଡିତ କାହାଣୀ ସବୁର ପ୍ରଭାବ । ରୂଢିବାଦୀ ପରିବାରରେ ବାପା, ମା', ଶିକ୍ଷକ ବା ଗୁରୁଙ୍କ ମୁହଁରୁ ଶୁଣି ଓ ବିଭିନ୍ନ ଧର୍ମଶାସ୍ତ୍ରରୁ ପଢି, ପୂଜାରୀ ପୁରୋହିତମାନଙ୍କ ଦ୍ୱାରା କରାଯାଉଥିବା ବିଭିନ୍ନ କର୍ମକାଣ୍ଡ ଦେଖି ଦେଖି ଭଗବାନଙ୍କ ମହନୀୟ ଗୁଣ ଓ ମହାନ ଶକ୍ତି ସମ୍ପର୍କରେ ମସ୍ତିଷ୍କରେ ଏକ କାଳ୍ପନିକ ବିଶ୍ୱାସ ଜମାଟ ବାନ୍ଧିଯାଏ । ବାରମ୍ବାର କୁହା ଯାଉଛି ଯେ ଭଗବାନଙ୍କୁ ସ୍ମରଣ କଲେ ହିଁ ସେ ସାହାଯ୍ୟ କରନ୍ତି । ଏହି ବିଶ୍ୱାସ ଯୋଗୁ ଯେ କୌଣସି ବିପଦ ବେଳେ ଆମ ଅଜାଣତରେ ମୁହଁରୁ ଭଗବାନଙ୍କ ନାମ ଉଚ୍ଚାରଣ ହୋଇଥାଏ ।

ଭଗବାନଙ୍କୁ ଅସ୍ୱୀକାର କରିବା ପାଇଁ ଯେଉଁ ଭୟ ରହୁଛି, ତାହା ମଧ୍ୟ ମଣିଷର ଦୁର୍ବଳତା ଓ ଆତ୍ମବିଶ୍ୱାସ ହୀନତାର ପରିଣାମ । ମଣିଷ ଯେହେତୁ ସ୍ୱୟଂସଂପନ୍ନ ନୁହେଁ ଏବଂ କର୍ମର ସଫଳତା ପାଇଁ ଆହୁରି ଅନେକ କିଛି ଉପରେ ନିର୍ଭର କରିଥାଏ, ସେଥିପାଇଁ ତା' ଭିତରେ ଆତ୍ମବିଶ୍ୱାସର ଅଭାବ ଦେଖାଦେଇଥାଏ । ତା'ପାଇଁ ଏକ ମାତ୍ର ଭରସା ରହୁଛି ଭଗବାନଙ୍କ କୃପା ।

ଉପରୋକ୍ତ ଆଲୋଚନାରୁ ଆମେ ଏତିକି ବିଚାର କରିବା ଉଚିତ ଯେ ସଫଳତା ପାଇବା ପାଇଁ କଠିନ ପରିଶ୍ରମ ସହିତ ଆତ୍ମବିଶ୍ୱାସ ରହିବା ଉଚିତ । ଆତ୍ମବିଶ୍ୱାସ ବୃଦ୍ଧି କରିବା ପାଇଁ ଉପଯୁକ୍ତ ଜ୍ଞାନ ପ୍ରାପ୍ତ କରିବାକୁ ହେବ । ସେହି ଜ୍ଞାନ ବିଜ୍ଞାନ ସମ୍ମତ ଓ ତର୍କସଙ୍ଗତ ମଧ୍ୟ ହେବା ଉଚିତ । କେବଳ ଶୁଣା ଜ୍ଞାନରେ ସତ୍ୟତା ନଥାଇପାରେ । ନିଜେ ପରୀକ୍ଷା କରି ଗ୍ରହଣ କରିବା ଉଚିତ ।

*****<>*****

ପ୍ରକାଶିକାଙ୍କ କଲମରୁ

ହେତୁବାଦୀ ବାଲ୍ମୀକି ନାୟକ ଗଞ୍ଜାମ ଜିଲ୍ଲାର ପାଟରାପଲ୍ଲୀ ଗ୍ରାମରେ ୧୯୫୧ ମସିହାରେ ଜନ୍ମ ହୋଇଥିଲେ । ସେ ଗତ ଚାଳିଶି ବର୍ଷ ହେଲା ହେତୁବାଦ ବିଚାରଧାରା ଉପରେ ଗବେଷଣା ଜାରି ରଖିଛନ୍ତି । ଧିରେ ଧିରେ ସମାଜରେ ଏକ କ୍ରାନ୍ତିକାରୀ ପ୍ରଗତି ର ସ୍ୱପ୍ନ ଦେଖୁଛନ୍ତି। ସମାଜରୁ ରୁଢିବାଦୀ ପରମ୍ପରା ଏବଂ ଧାର୍ମିକ କୁସଂସ୍କାର ସହିତ ଜନସାଧାରଣଙ୍କ ମନରୁ ଅମୂଳକ ବିଶ୍ୱାସ ଓ ଅହେତୁକ ଭୟ ଦୁର ହୋଇପାରିଲେ, ଲେଖକଙ୍କ ସ୍ୱପ୍ନ ସାର୍ଥକ ହେବ । ସେ ନିଜର ଅନୁଭବ ଓ ସଂଗୃହିତ ବିଜ୍ଞାନ ତଥ୍ୟଗୁଡିକୁ ବିଭିନ୍ନ ପ୍ରବନ୍ଧ ମାଧମରେ ପ୍ରକାଶ କରୁଛନ୍ତି । ଇତି ମଧ୍ୟରେ ଓଡିଆ ପାଠକମାନଙ୍କ ଭିତରେ ସେ ଜଣେ ହେତୁବାଦୀ ସାହିତ୍ୟ ଲେଖକ ଭାବେ ନିଜର ପରିଚୟ ସୃଷ୍ଟି କରିପାରିଛନ୍ତି । ଏହା ପୂର୍ବରୁ ତାଙ୍କର ସାତ ଖଣ୍ଡ ପ୍ରବନ୍ଧ ସଙ୍କଳନ ପ୍ରକାଶ ପାଇ ପାଠକ ମହଲରେ ବେଶ ଆଦୃତ ହୋଇଛି ।

**"ହେତୁବାଦୀ ବିଚାର"** ତାଙ୍କର ଅଷ୍ଟମ ସଙ୍କଳନ ଭାବେ ପ୍ରକାଶ ପାଉଛି । ଆମର ବିଶ୍ୱାସ ଏହି ପୁସ୍ତକଟିମଧ ପାଠକମାନଙ୍କ ମନରେ ଆନ୍ଦୋଳନ ସୃଷ୍ଟିକରିବ ।